# ନୂଆ ସେରେଲାକ୍ ଅରେଞ୍ଜ




## ଆପଣଙ୍କ ଶିଶୁକୁ ସେରେଲାକ୍‌ର ଅଦ୍ୱିତୀୟ ଲାଭ ଆଣିଦେବା ପାଇଁ,—ଯାହାହେଉ, ଆଉ ଏକ ପନ୍ଥା।

ଏ ହେଉଛି, ନୂଆ ସେରେଲାକ୍ ଅରେଞ୍ଜ: ଆପଣଙ୍କ ଶିଶୁକୁ ଯାହାହେଉ ଆଉ ଏକ ଅଦ୍ୱିତୀୟ ଲାଭ ଆଣି ଦେବାର ଅପୂର୍ବ ସୁଯୋଗ। ଶିଶୁର ଆହାରରେ କିଛିଟା ପରିବର୍ତ୍ତନ ତାକୁ ଭଲ ଲାଗିଥାଏ। ଏଣୁ ଏଥିରେ ଅରେଞ୍ଜର ସମସ୍ତ ଗୁଣ ଭରି ରହିଛି।

ଆଉ ଆପଣ ଯେତେବେଳେ ଶିଶୁକୁ ସେରେଲାକ୍ ଅରେଞ୍ଜ ଦିଅନ୍ତି, ସେତେବେଳେ ତାକୁ ସେରେଲାକ୍‌ର ସମସ୍ତ ଅଦ୍ୱିତୀୟ ଲାଭ ମିଳିଥାଏ। ଯଥା— ପ୍ରତ୍ୟେକ ଆହାରରେ ପୂରା ପୁଷ୍ଟିସାଧନ, ରୁଚିକର ସ୍ୱାଦ ଏବଂ ମୁହୂର୍ତ୍ତକେ ପ୍ରସ୍ତୁତ।

ଏଣୁ ଦୁଧ ସାଙ୍ଗକୁ ୪ ମାସରୁ ଶିଶୁଟିକୁ ସେରେଲାକ୍ ହ୍ୱିଟ୍ ଏବଂ ୬ ମାସରୁ ସେରେଲାକ୍ ଆପଲ କିମ୍ବା ନୂଆ ସେରେଲାକ୍ ଅରେଞ୍ଜ ଖୁଆନ୍ତୁ—ଏହା ହେଉଛି ଆପଣଙ୍କ ଶିଶୁକୁ ସେରେଲାକ୍‌ର ଅଦ୍ୱିତୀୟ ଲାଭ ଆଣିଦେବା ପାଇଁ ତିନୋଟି ରୁଚିକର ଉପାୟ।

ପ୍ୟାକେଟ ଡବା ଉପରେ ଲେଖାଥିବା ନିର୍ଦ୍ଦେଶାବଳୀକୁ ଯତ୍ନ ସହକାରେ ପାଳନ କରନ୍ତୁ; ଯାହାଫଳରେ ଏହି ଶିଶୁ ଖାଦ୍ୟ ପ୍ରସ୍ତୁତ କରିବାର ଶୁଦ୍ଧତା ରହିବ ଏବଂ ଆପଣଙ୍କ ଶିଶୁକୁ ମିଳିବ ସ୍ୱାସ୍ଥ୍ୟ ଓ ସୁଷମ ପୁଷ୍ଟିକର ଆହାର






Nestlé

R K SWAMY/FSL/4974 ORI

"ଦୁଧ ମିଠାଇର ମଜାପାଏ
ଖାଉଛି ବୋଲିହିଁ ବଢ଼ିଥାଏ"




ନୂଆ
ଲିପ୍‌ଟନ
ଗ୍ଲୁକୋ ମିଲ୍‌କ ବିସ୍କୁଟ

ଦୁଧ ମିଠାଇର ସମିଶ୍ରଣ ଯେଥିପାଇଁ ଏତେ ପୁଷ୍ଟିଗୁଣ

ଲିପ୍‌ଟନ
ମାନେ ସର୍ବୋତ୍ତମ କ୍ୱାଲିଟୀ

CLARION C-LGM-2




# ମଉଜ-ମଜଲିସ୍‌ର ଦୁନିଆରେ ମିଶନ୍ତୁ—ମ୍ୟାଗୀ କ୍ଲବର ସଦସ୍ୟ ହୁଅନ୍ତୁ !

ଜଣେ ସଦସ୍ୟ ହେବା ଲାଗି, ୫ ଟି ଖାଲି ମ୍ୟାଗୀ ନୁଡଲସ୍‌ ପ୍ୟାକ୍‌ ର ଆଗ ପଟରେ ଯେଉଁଠି 'Maggi 2-Minute Noodles' ବୋଲି ନାମ ଲେଖା ରହିଛି ସେହି ଅଂଶକୁ ହିଁ କାଟି ଆମ ପାଖକୁ ପଠାନ୍ତୁ । ଆପଣଙ୍କୁ ଆଜୀବନ ସଦସ୍ୟ କରିବା ପାଇଁ ସୁପର ମ୍ୟାଗୀ ସଦସ୍ୟ ପଦର ଏକ ବ୍ୟାଜ୍‌ ଓ ସଦସ୍ୟ ଶ୍ରେଣୀଭୁକ୍ତ ହେବାର ଏକ ପ୍ରମାଣପତ୍ର ଆମେ ଆପଣଙ୍କ ପାଖକୁ ପଠାଇବୁ । ଏହାଛଡ଼ା ଏହିସବୁ ଉପହାର ମଧ୍ୟରୁ ଯେକୌଣସି ଗୋଟିଏକୁ ବାଛିବା ଲାଗି ସୁଯୋଗ ମଧ୍ୟ ମିଳିବ—

* ମ୍ୟାଗୀ ସ୍କୁଲ ଫନ୍‌ ସେଟ୍‌ (ଏକ ସମୟ-ସାରଣୀ ଓ ୨୦ ଟି ପୁସ୍ତକ ଲେବୁଲ)
* ମ୍ୟାଗୀ ଟ୍ରାଫିକ୍‌ ଗେମ୍‌ (ଟ୍ରାଫିକ ଖେଳ) * ସୁଇନଜ୍‌ ପଜ୍‌ଲ (ଚୀନା ଗୋଲକଧନ୍ଦା)
* ମ୍ୟାଗୀ ପୋଷ୍ଟର ସେଟ * ଡାକନ ଟ୍ୱେଲେ କମିକ୍‌ (ପ୍ରତ୍ୟେକ ଥର ନୂତନ ସଂଖ୍ୟା ମିଳିବ)

ଯଦି ଆପଣ ଚାହାଁନ୍ତି, ପ୍ରତ୍ୟେକ ଉପହାର ପାଇଁ ୫ଟି ଖାଲି ଖୋଳକୁ ପଠାଇ ଏହି ସବୁ ୫ଟି ଯାକ ଉପହାରକୁ ଏକ ମିଆଦ ମଧ୍ୟରେ ସଂଗ୍ରହ କରି ପାରନ୍ତି । ଖାଲି କ'ଣ ଏତକ, ଭବିଷ୍ୟତରେ ମ୍ୟାଗୀ କ୍ଲବରେ ଅନେକ ଚିତ୍ତାକର୍ଷକ ଘଟଣା ଘଟିବ ।
ତେଣୁ ଆଜହିଁ ସଦସ୍ୟ ହୁଅନ୍ତୁ !




**ଏହା ଗୁରୁତ୍ୱପୂର୍ଣ୍ଣ !**

କାଟି ରଖିଥିବା ନାମଗୁଡ଼ିକୁ ୬୦-ପଇସିଆ ଟିକଟ ଲଗାଇ ଲଫାପାରେ ପୁରାନ୍ତୁ ଓ
ଏହିସବୁ ଟିକନଖି ବବରଣୀ ଖଣ୍ଡିଏ କାଗଜ ଉପରେ ଲେଖନ୍ତୁ.
ନାମ : ପୁରା ଠିକଣା : ବୟସ : ବାଳକ/ବାଳିକା
ଯେତୋଟି କଟା ଅଂଶ ଲଫାପାରେ ପୁରାଇଥିବେ ସେଗୁଡ଼ିକର ସଂଖ୍ୟା,
ଆପଣ ଯେଉଁ ଉପହାର ଚାହାଁନ୍ତି ତାର ନାମ
ଆପଣଙ୍କର ପତ୍ର ଆମ ପାଖକୁ ଏହି ଠିକଣାରେ ପଠାନ୍ତୁ —
ଦ ମ୍ୟାଗୀ କ୍ଲବ, ପୋଷ୍ଟ ବକ୍ସ ନମ୍ବର-୫୭୮, ନୂଆ ଦିଲ୍ଲୀ-୧୧୦୦୫୫




HTA 6026





# ଜହ୍ନ ମାମୁଁ

ସମ୍ପାଦକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍ଡୀ


---

ଏ ସଂଖ୍ୟାରୁ ଜହ୍ନମାମୁଁ ଦ୍ୱାବିଂଶ ବର୍ଷରେ ପଦାର୍ପଣ କରୁଛି । ସମସ୍ତଙ୍କୁ ଅଭିନନ୍ଦନ । ପଞ୍ଚମ ଶତାବ୍ଦୀର ପ୍ରବୀଣ ନାଟ୍ୟକାର ବିଶାଖାଦତ୍ତଙ୍କର ବିଖ୍ୟାତ ସଂସ୍କୃତ ନାଟକ 'ମୁଦ୍ରାରାକ୍ଷସ'ର କାହାଣୀ ଏ ସଂଖ୍ୟାର ଚନ୍ଦକଥାରେ ପରିବେଷିତ । ଏହା ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଓ ତାଙ୍କ ବିଖ୍ୟାତ ମନ୍ତ୍ରୀ ଚାଣକ୍ୟଙ୍କ କାହାଣୀ ।

## ଅମରବାଣୀ

ଯତ୍ ତଦଗ୍ରେ ବିଷମିବ, ପରିଣାମେ ମୃତୋପମମ୍,
ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧି ପ୍ରସାଦଜମ୍ ।

[ନିର୍ମଳ ସାତ୍ତ୍ୱିକ ଜୀବନ ଯାପନର ଅଭ୍ୟାସ ପ୍ରଥମରେ ବିଷ ଭଳି କଷ୍ଟଦାୟକ ମନେ ହୁଏ । କିନ୍ତୁ କ୍ରମେ ସେଥିରୁ ଯେପରି ତୃପ୍ତି ମିଳେ, ତାହା ଅମୃତ ଭଳି ଆନନ୍ଦଦାୟକ ।]

---


ବର୍ଷ : ୨୨ ଜୁଲାଇ ୧୯୮୮ ଅଙ୍କ : ୧

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦


C HITRA





# APOLLO

## Launch pad.. for super drawing



APOLLO

# Little People

CRAYON PENCILS

*– for space age kids like you.*



**APOLLO PENCILS PVT. LTD.**

107, Regal Industrial Estate, Acharya Donde Marg, Sewree (West), Bombay-400 015. Ph.: 4133295/4133215.

[illegible] GREATER BOMBAY : D. **Jagjivandas & Company**, 177, Abdul Rehman Street, Bombay-400 003. Ph.: 326524 MAHARASHTRA : **A. Aalok & Company**, 107, Regal Industrial Estate, Acharya Donde Marg, Sewree (West), Bombay-400 015. Ph.: 4133295/4133215 GUJARAT : **N. Chimanlal & Co.** 'Jesmin' Building, Near Firdaus Flats, [illegible] Ahmedabad-380 001. Ph.: 395198/399570 DELHI, HARYANA, PUNJAB, J.K. & HIMACHAL PRADESH : **Bharati Traders**, 86, Chawri Bazar, Delhi-110 006. Ph.: [illegible] KARNATAKA, ANDHRA PRADESH & GOA : **Sanghvi Corporation**, Suresh Bldg., No. 17, 14th Cross, Kalasipalayam, New Extension, Bangalore-560 002. Ph.: 225702 [illegible] & WEST BENGAL : **Sanghvi Corporation**, 14/1/1A, Jackson Lane, 2nd Floor, Calcutta-700 001. Ph.: 262141 UTTAR PRADESH : **Sanghvi Corporation**, 7-A, [illegible] Marg, [illegible] Bagh, Lucknow (U.P.) Ph.: 49391 TAMIL NADU : **Sanghvi Corporation**, Bafna Complex, 1st Floor, 35, Strotten Muthia Mudaliar Street, Madras-600 079. [illegible] REST OF INDIA : **Sanghvi Corporation**, 107, Regal Industrial Estate, Acharya Donde Marg, Sewree (West), Bombay-400 015. Ph.: 4133295/4133215

3 Brothers/AP/37/95

କେମ୍ପକୋ ର ଅବଦାନ
# ନୂଆ

## ଏକ୍ଲେଆରସ ଭିତରେ ଭରିଛି ବେଶି ଚକୋଲେଟ୍

କେମ୍ପକୋ ଚକୋଲେଟ ଏକ୍ଲେଅରସ୍'ର ନୂଆ ପ୍ୟାକେଟ ଖୋଲନ୍ତୁ ତ ଦେଖି । ଦେଖୁ ଦେଖୁ ଆପଣଙ୍କ ଚାରିପଟେ ହସ-ହସ ମୁହଁସବୁ ବେଢ଼ିଯାଉଥିବେ.. ଆଉ ହାତରେ ରହିଯିବ କେବଳ ତା'ର ଖାଲି ପ୍ୟାକ୍ !



ହେଲେ, ଆପଣଙ୍କ ସୁ-ମଧୁର ପସନ୍ଦ ପାଇଁ ସବୁରି ବାହ୍ୱା ଶୁଣାଯାଉଥିବ ।

**ବଢ଼ିଆ ସୁଆଦ ବାଣ୍ଟନ୍ତୁ**




ଭାରତ'ର ସର୍ବବୃହତ୍,
ସର୍ବାଧୁନିକ ପ୍ଲାଣ୍ଟରେ ଉତ୍ପାଦିତ

କେମ୍ପକୋ ଲିମିଟେଡ, ମାଙ୍ଗାଲୋର

# ଅଦ୍ଭୁତ ହିସାବ

ଦୁନିଆରେ କେତେ କିସମର ହିସାବୀ ଲୋକ ଥାନ୍ତି । ସେଥିଭିତରୁ ଜଣେ ହେଲେ ରଙ୍ଗପୁର ବଜାରର ଥଇଲିବାଲା ବେପାରୀ ସୁନ୍ଦର ସେଠ ।

ଆଜିକାଲି ଯେମିତି ବ୍ୟାଙ୍କରେ ଟଙ୍କା ରଖା ହୁଏ ସେତେବେଳେ ସେମିତି ରଜାଙ୍କ ଖଜଣାଖାନାରେ ଲୋକେ ଟଙ୍କା ରଖି ପାରୁଥିଲେ । ତେବେ ବ୍ୟାଙ୍କରେ ସୁଧ ମିଳେ, ଖଜଣା-ଖାନାରେ ଖାଲି ଅର୍ଥ ସୁରକ୍ଷିତ ରହୁଥିଲା ।

ତେବେ ଅଧିକାଂଶ ବେପାରୀ ଲୋକଙ୍କୁ ଋଣ ଦେଇ ସୁଧ ଉପାର୍ଜନ କରୁଥିଲେ । କିନ୍ତୁ ସୁନ୍ଦର ସେଠ କେବେ ଋଣ ଦେଉ ନଥିଲେ । ଦିନେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ହରିହର ତାଙ୍କୁ କହିଲେ, "ସୁନ୍ଦର ଭାଇ, ତମେ ତମର ସବୁ ଲାଭ ଖଜଣାଖାନାରେ ନରଖି ଲୋକଙ୍କୁ ଋଣ ଦେଲେ ତ ସୁଧ ପାଆନ୍ତ !"

"ଆରେ ହରିହର, ମୁଁ କ'ଣ ବୋକା ? ମୁଁ ଯେତିକି ଟଙ୍କା ଜମା ରଖେଁ, ସେଥିରୁ ତିନି ଭାଗ ହେଲା ମୂଳଧନ, ବାକି ଚତୁର୍ଥ ଭାଗ ହେଲା ସୁଧ । ଏଇଆ ଧରିନେଇ ମୁଁ ରଖେଁ । ତେଣୁ ମୁଁ ସୁଧ ହରାଉଛି କେଉଁଠି ? ହାଃ ହାଃ !" ସୁନ୍ଦର ସେଠ ବୁଝାଇ ଦେଲେ ।

ହରିହର ଆଉ କହିବେ କ'ଣ ?





# ଗୋପନୀୟ କାରଣ

ସୁଜଳପୁର ଗାଁରେ ସମସ୍ତେ କହୁଥାନ୍ତି, "ନାରାୟଣ ଯେତିକି ସତ୍, ସେତିକି ସାହସୀ। ସେ କେବେ କାହାକୁ ଖୋସାମଦ କରେ ନାହିଁ। କାହାର ପାଖକୁ ସେ କେବେ ସାହାଯ୍ୟ ପାଇଁ ଯାଏ ନାହିଁ, କିନ୍ତୁ ସର୍ବଦା ଅନ୍ୟକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥାଏ।"

ଏଭଳି ମନ୍ତବ୍ୟ ଶୁଣିଲେ ଖାଲି ଜଣେ ଲୋକର ଗାତ୍ର ଦାହ ହେଉଥାଏ। ସେ ହେଲେ ଗାଁର ସବୁଠାରୁ ଧନବାନ ବ୍ୟକ୍ତି ମହେନ୍ଦ୍ରବାବୁ। ସେ କହୁଥାନ୍ତି, "ନାରାୟଣର ବାପା ଆମ ସିରସ୍ତାରେ କାମ କରୁଥିଲା। ଆମର ଘରୁ ଯାହା ଦରମା ପାଉଥିଲା, ସେଥିରେ ନାରାୟଣ ମଣିଷ ହୋଇଛି!"

ଲୋକେ କହୁଥାନ୍ତି, "ସେ ଯାହାହେଉ, ତା' ବାପା କାମ କରୁଥିଲେ, ଆୟ କରୁଥିଲେ। ଆପଣଙ୍କ ପାଖରେ କାମ ନକରିଥିଲେ ଆଉ କେଉଁଠାରେ କରିଥାନ୍ତେ!"

"କିନ୍ତୁ ନାରାୟଣ ଯେ ଆଜି ଏତେ ଗର୍ବୀ ହୋଇଛି, ତାହା ପଛରେ ଆମର ପରିବାରର ଅବଦାନ ଅଛି। କିନ୍ତୁ ନାରାୟଣକୁ ଦେଖ, ସେ କେବେ ବି ଥରେହେଲେ ସେ ବିଷୟ ମନେ ପକାଏ ନାହିଁ!" ମହେନ୍ଦ୍ରବାବୁ କହୁଥାନ୍ତି?

ଏକଥାର ବିଶେଷ ମୂଲ୍ୟ ନଥିଲେ ବି ଏହା କହି ସେ ସନ୍ତୋଷ ଲାଭ କରୁଥାନ୍ତି।

କଥା ହେଲା, ମହେନ୍ଦ୍ରବାବୁଙ୍କ ପାଖରେ ଗାଁର ପ୍ରାୟ ସବୁ ଲୋକ କୌଣସି ନା କୌଣସି କାରଣରେ ଋଣୀ ରହିଥିଲେ, କିନ୍ତୁ ମହେନ୍ଦ୍ର କେବେ ତାଙ୍କ ପାଖରୁ କୌଣସି ସାହାଯ୍ୟ ଭିକ୍ଷା କରି ନାହିଁ। ଏହା ମହେନ୍ଦ୍ରବାବୁଙ୍କୁ ଭାରି ଅସ୍ୱସ୍ତିକର ଲାଗୁଥାଏ।

"ବସୁନ୍ଧରା"

ସବୁଦିନ ଉପରଓଳି ଗାଁର ଥିଲାବାଲା ଲୋକେ ମହେନ୍ଦ୍ରବାବୁଙ୍କୁ ଘେରି ବସୁଥାନ୍ତି— ଗାଁ ମଝି ବରଗଛ ମୂଳ ଚଉତରା ଉପରେ । ଦୁନିଆ ଯାକର ଗପ ପଡୁଥାଏ । ଅବଶ୍ୟ ମହେନ୍ଦ୍ରବାବୁହିଁ ସବୁଠାରୁ ବେଶି ଗପୁଥାନ୍ତି । କାରଣ ସେ ଧନୀଲୋକ । ସମସ୍ତେ ତାଙ୍କ କଥା ଶୁଣିବାକୁ ବାଧ । ସେ ଯାହା କହୁଥାନ୍ତି, ସେସବୁ ସାଧାରଣତଃ ନିଜ ବଡ଼େଇ ।

ଦିନେ ଏମିତି ବୈଠକ୍ ଚାଲିଛି, ହଠାତ୍ ସେଠାରେ ଆସି ପହଞ୍ଚିଗଲା ନାରାୟଣ । ସେ ମହେନ୍ଦ୍ରବାବୁଙ୍କୁ ନମସ୍କାର କରି କହିଲା, "ବାବୁ, ମୁଁ ଆଜି ଆପଣଙ୍କଠୁଁ କିଛି ସହାୟତା ଚାହେଁ ।"

ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ମହେନ୍ଦ୍ରବାବୁଙ୍କ ମୁହଁରେ ତୃପ୍ତି ଓ ଗର୍ବ ଫୁଟି ଉଠିଲା । ଯେଉଁ ନାରାୟଣ କେବେ କାହାଠୁଁ କିଛି ଚାହେଁ ନାହିଁ ବୋଲି ସମସ୍ତେ କହୁଥାନ୍ତି, ସେ ଆଜି ତାଙ୍କ ସହାୟତା ମାଗୁଛି !

"କ'ଣ ଦରକାର ନାରାୟଣ ? ମୋ ଦେଇ ଯାହା ହୋଇ ପାରିବ, ତାହା ନିଶ୍ଚୟ କରିବ ।" ମହେନ୍ଦ୍ରବାବୁ ଗମ୍ଭୀର ହୋଇ କହିଲେ ।

"ମୋର ଘର ମରାମତି ହେବାର ଅଛି । ବର୍ଷା ଋତୁ ପୂର୍ବରୁ ସେ କାମଟି ହେବା ଲୋଡ଼ା । ସେପାଇଁ ମୋର ପ୍ରୟୋଜନ ତିନିଶହ ଟଙ୍କା···"

ନାରାୟଣ ଆଉ କିଛି କହିବା ପୂର୍ବରୁ ମହେନ୍ଦ୍ରବାବୁ କହିଲେ, "ଆରେ ନାରାୟଣ,



ଏଇ କଥା ? ସନ୍ଧ୍ୟାବେଳେ ଘରକୁ ଆସିବୁ । ଟଙ୍କା ନେଇଯିବୁ ।"

"ନା ଆଜ୍ଞା, ଟଙ୍କା ଆପଣଙ୍କୁ ଦେବାକୁ ପଡ଼ିବ ନାହିଁ । ମହାଜନଠୁଁ ଟଙ୍କା ଆଣିବି । ତା' ସହ କଥା ହୋଇ ସାରିଛି । ସେ ଖାଲି ଜଣେ ବିଶିଷ୍ଟ ଲୋକ ମୋ ତରଫରୁ ଜାମିନ୍ ରହିବେ, ଏତିକି ଚାହେଁ । ଆପଣ ଜାମିନ୍ ହେବେ, ମୋର ଏହାହିଁ ଅନୁରୋଧ ।" ନାରାୟଣ କହିଲା ।

"ଜାମିନ୍ ହେବା ଦରକାର କ'ଣ ? ତୋର ବା ମହାଜନଠୁଁ ଟଙ୍କା ଆଣିବା ଦରକାର କ'ଣ ? ଟଙ୍କା ପରା ମୁଁ ତୋତେ ଦେବି ବୋଲି କହିଲି !" ମହେନ୍ଦ୍ରବାବୁ ବୁଝାଇଲେ ।

"ବାବୁ, ଆପଣଙ୍କଠୁଁ ଟଙ୍କା ନେବାରେ ଅସୁବିଧା ଅଛି ।" ନାରାୟଣ କହିଲା ।

"କ'ଣ ଅସୁବିଧା ? ମୁଁ ତ ବର୍ତ୍ତମାନ ଦେବାକୁ ପ୍ରସ୍ତୁତ । ଜାମିନ୍ ଦରକାର ନାହିଁ କି ସୁଧ ବି ଚାହେଁନା ।" ମହେନ୍ଦ୍ରବାବୁ ବୁଝାଇ ଦେଲେ ।

ନାରାୟଣ ଅଳ୍ପ ହସି କହିଲା, "ସେଇଟା ତ ଅସୁବିଧା! ସୁଧ ନଦେଇ ଟଙ୍କା ନେଲେ ମୋତେ ଘାର ଅଡୁଆ ଲାଗିବ । ମହାଜନ ଟଙ୍କା ଦେଉ, ସୁଧ ନେଉ । ଆପଣ ଖାଲି ଜାମିନ୍ ରହନ୍ତୁ ।"

ମହେନ୍ଦ୍ରବାବୁ ଦେଖିଲେ, ନାରାୟଣକୁ ବୁଝାଇବା ସମ୍ଭବ ନୁହେଁ । ସେ ହସି ହସି କହିଲେ, "ଆଚ୍ଛା ନାରାୟଣ, ଗାଁରେ ଏତେ





"ଯଦି ଆପଣ ନିଶ୍ଚୟ ଶୁଣିବେ, ତେବେ ଅବଶ୍ୟ କହିବି । କିନ୍ତୁ ବର୍ତ୍ତମାନ ନୁହେଁ । ଆଉ ଦିନେ ।" ନାରାୟଣ କହିଲା ।

ମହେନ୍ଦ୍ରବାବୁ ମହାଜନ ପାଖକୁ ଲୋକ ପଠାଇଲେ । ମହାଜନ ଆସିଲା । ସେ କହିଲେ, "ନାରାୟଣକୁ ଟଙ୍କା ଦିଅ । ସେ ପରିଶୋଧ ନକରି ପାରିଲେ ମୁଁ ଦେବି ।"

ମହାଜନ ନାରାୟଣକୁ ଟଙ୍କା ଦେଇଦେଲା ।

ମାସକ ପରେ ନାରାୟଣ ମହାଜନର ଟଙ୍କା ପରିଶୋଧ କରିଦେଲା ଓ ମହେନ୍ଦ୍ରବାବୁ ପାରିମିତ୍ର ପରିବୃତ ହୋଇ ବସିଥିବା ବେଳେ ତାଙ୍କୁ ଆସି ସେ ଖବର ଦେଲା ।

"ଏତେ ଶୀଘ୍ର ଋଣ ଶୋଧ କରିଦେଲୁ ? କେମିତି ?" ମହେନ୍ଦ୍ରବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"କଥା କ'ଣ କି, ଏ ଗରିବ ଲୋକଟି ଅଳ୍ପ ଅଳ୍ପ ସଞ୍ଚୟ କରି ଜଣେ ସଜ୍ଜନଙ୍କଠି ଜମା ରଖୁଥିଲା । ସେ ସଜ୍ଜନ ଗୋଟାଏ ଅସୁବିଧାରେ ପଡି ମୋ ଜମା ଟଙ୍କାରୁ କିଛି ଖର୍ଚ୍ଚ କରି ଦେଇଥିଲେ । ସେଥିପାଇଁ ମୋତେ କରଜ କରିବାକୁ ହେଲା । ସେ ଯେମିତି ମୋ ଟଙ୍କା ଦେଇଦେଲେ ମୁଁ ସେମିତି ତାକୁ ନେଇ ମହାଜନଙ୍କୁ ଦେଇଦେଲି ।" ନାରାୟଣ କହିଲା ।

"କିଏ ସେ ସଜ୍ଜନ ?" ମହେନ୍ଦ୍ରବାବୁ ପଚାରିଲେ ।

ବରିଷ୍ଠ ଲୋକ ଥାଉଁ ଥାଉଁ ତୁ ମୋତେ ଜାମିନ୍ ହେବା ପାଇଁ କାହିଁକି କହୁଛୁ ?"

ମହେନ୍ଦ୍ରବାବୁ ଆଶା କରୁଥିଲେ, ସମସ୍ତଙ୍କ ଆଗରେ ନାରାୟଣ କହିବ କି ସେ ହେଲେ ସବୁଠାରୁ ନିର୍ଭରଯୋଗ୍ୟ ଲୋକ, ସବୁଠାରୁ ମାନ୍ୟଗଣ୍ୟ ଲୋକ, ସେ ଜାମିନ୍ ହେଲେ ଟଙ୍କା ଦେବାପାଇଁ ମହାଜନର ତିଳେ ମାତ୍ର ଦ୍ୱିଧା ରହିବ ନାହିଁ—ଏମିତି କିଛି ।

କିନ୍ତୁ ନାରାୟଣ କହିଲା, "ବାବୁ, କାରଣ ଅବଶ୍ୟ ଅଛି । କିନ୍ତୁ ସେକଥା କହିବା ଦରକାର କ'ଣ ?"

"ନା, ନା, କହିଲେ କ୍ଷତି କ'ଣ ?" ମହେନ୍ଦ୍ରବାବୁ ଜିଗର କଲେ ।

"ବାବୁ, ତାଙ୍କ ନାମ କହିବ ନାହିଁ । ସେ ପ୍ରକୃତରେ ସଜ୍ଜନ । ମୋର ହଠାତ୍ ଟଙ୍କା ଦରକାର ପଡ଼ିବ ବୋଲି ସେ ଜାଣି ନଥିଲେ । ତେଣୁ ଖର୍ଚ୍ଚ କରି ଦେଇଥିଲେ ।" ନାରାୟଣ କହିଲା ।

"ଆଚ୍ଛା, ସେଦିନ ମୁଁ ଯେଉଁ ପ୍ରଶ୍ନଟି ପଚାରିଥିଲି; ତା'ର ଉତ୍ତର ଦେବୁ ନାହିଁ ? ଏତେ ଲୋକ ଥାଉଁ ଥାଉଁ ତୁ ମୋତେ କାହିଁକି ଜାମିନଦାର୍ ରୂପେ ବାଛିଲୁ ?" ମହେନ୍ଦ୍ର-ବାବୁ ପଚାରିଲେ ।

ନାରାୟଣ ଇତସ୍ତତଃ କରି କହିଲା, "ସମସ୍ତଙ୍କ ଆଗରେ ଏ ପ୍ରଶ୍ନର ଉତ୍ତର ଦେବାକୁ ହେବ ? କାରଣଟି ଗୋପନୀୟ । ଆପଣଙ୍କୁ ଏକାନ୍ତରେ କହିଲେ ଚଳିବ ନାହିଁ ?"

"ନା, ନା, ସମସ୍ତଙ୍କ ଆଗରେ କହିଲେ କ୍ଷତି କ'ଣ ?" ମହେନ୍ଦ୍ରବାବୁ ଉତ୍ସାହରେ କହିଲେ ।

"ବାବୁ, ଆପଣ ଅନେକ ସମୟରେ କହିଥାନ୍ତି, ମୋ ବାପା ଆପଣଙ୍କ ପିଉସ୍ତାରେ ଗୃହକର୍ମ କରୁଥିଲେ । ଅର୍ଥାତ୍ ମୁଁ ଆପଣଙ୍କ ପ୍ରତି କୃତଜ୍ଞ ରହିବା ଉଚିତ । ତେଣୁ ଆପଣଙ୍କୁ ଜାମିନ୍‌ଦାର୍ କରି ମୁଁ ସେହି କୃତଜ୍ଞତା ପ୍ରକାଶ କଲି ।" ନାରାୟଣ କହିଲା ।

"ତୋ କଥା ମୁଁ ବୁଝି ପାରୁନାହିଁ । ଏଥିରେ କୃତଜ୍ଞତା ପ୍ରକାଶ କଲୁ କିପରି ?" ମହେନ୍ଦ୍ରବାବୁ ପଚାରିଲେ ।

"ସମସ୍ତେ ଜାଣନ୍ତି ମୁଁ କେବେ କାହାର ସାହାଯ୍ୟ ଭିକ୍ଷା କରେଁ ନାହିଁ । ମୋ ଭଳି ଲୋକ ଯେତେବେଳେ ସର୍ବସମକ୍ଷରେ ଆପଣଙ୍କ ସହାୟତା ମାଗିଲା, ଏହା ଆପଣଙ୍କର ସୌଭାଗ୍ୟ ନୁହେଁ ? ଆପଣଙ୍କୁ ଭାଗ୍ୟବାନ ବୋଲି ପ୍ରମାଣ କରି ମୁଁ ଆପଣଙ୍କ ପ୍ରତି କୃତଜ୍ଞତା ପ୍ରକଟ କଲି ।" ନାରାୟଣ କହିଲା ।

ମହେନ୍ଦ୍ରବାବୁଙ୍କ ମୁହଁ ଚଲୁଲ ଖାଇଲା ପରି ଦିଶିଲା । ଅନ୍ୟ ସମସ୍ତେ ହସ ଚାପି ରଖିଲେ ।






# ମିଜାଜ୍

ଚନ୍ଦ୍ରପୁର ଓ ପାର୍ଶ୍ୱବର୍ତ୍ତୀ ରାଜ୍ୟ ତନ୍ତଗିରି ଭିତରେ ବିବାଦ ଲାଗି ରହୁଥାଏ ।

ଚନ୍ଦ୍ରପୁରର ରାଜା ଏ ବିବାଦର ସବୁଦିନିଆ ସମାଧାନ କରିବା ନିମନ୍ତେ ବହୁତ ଚେଷ୍ଟା କଲେ । କିନ୍ତୁ ତନ୍ତଗିରିର ରାଜା ତାଙ୍କ ନିବେଦନ ପ୍ରତି କାନ ଦେଲେ ନାହିଁ । ଶେଷକୁ ଦିନେ ହଠାତ୍ ତନ୍ତଗିରିର ସୈନ୍ୟବାହିନୀ ପୂର୍ବରୁ ଯୁଦ୍ଧ ଘୋଷଣା ନକରି ଚନ୍ଦ୍ରପୁର ଭିତରକୁ ମାଡ଼ି ଆସିଲେ । ଚନ୍ଦ୍ରପୁରର ରାଜା, ସେନାପତି ଓ ସୈନ୍ୟମାନେ ପ୍ରାଣମୂର୍ଚ୍ଛା ପ୍ରତିରୋଧ କରି ଖାଲି ଯେ ତନ୍ତଗିରିର ସୈନ୍ୟବାହିନୀକୁ ପରାସ୍ତ କଲେ, ସେତିକି ନୁହେଁ, ତନ୍ତଗିରିକୁ ଦଖଲ କରି ଚନ୍ଦ୍ରପୁର ସହ ମିଶାଇ ଦେଲେ ।

ତେବେ ଚନ୍ଦ୍ରପୁରର ସେନାପତି ଶକ୍ତିବର୍ମା ଗୋଟାଏ ଗୋଡ଼ ହରାଇ ଅକ୍ଷମ ହୋଇଗଲେ ।

"ମହାରାଜ, ଜଣେ ନୂଆ ସେନାପତି ମନୋନୀତ କରନ୍ତୁ ।" ଶକ୍ତିବର୍ମା ରାଜାଙ୍କୁ କହିଲେ । ରାଜା ଅନିଚ୍ଛା ସତ୍ତ୍ୱେ ସେ ପ୍ରସ୍ତାବ ଗ୍ରହଣ କଲେ ଓ ସେନାପତି ଓ ମନ୍ତ୍ରୀଙ୍କ ଉପରେ ନୂଆ ସେନାପତି ବାଛିବାର ଭାର ଦେଲେ । ସୈନ୍ୟବାହିନୀର ଦକ୍ଷ ଯୋଦ୍ଧାମାନଙ୍କ ଭିତରୁ ଶେଷ ପର୍ଯ୍ୟନ୍ତ ମାତ୍ର ଦୁଇଜଣଙ୍କୁ ଆଖିରେ ରଖାଗଲା । ଜଣକର ନାମ ଜୟ: ଅନ୍ୟ ଜଣକର ନାମ ବିଜୟ । ସେନାପତି ଶକ୍ତିବର୍ମା ମନ୍ତ୍ରୀଙ୍କୁ କହିଲେ, "ଦୁହେଁ ସବୁ ଦୃଷ୍ଟିରୁ ସମାନ ଯୋଗ୍ୟ । କିନ୍ତୁ ଦୁହିଁଙ୍କ ସ୍ୱଭାବ ଓ କଥାବାର୍ତ୍ତା ଏତେ ନରମ ଯେ ସେନାପତି ହେବା ପରେ କେହି ଜଣେ କଡ଼ା ଭାବରେ ସୈନ୍ୟମାନଙ୍କୁ ହୁକୁମ ଦେଇପାରିବେ ନାହିଁ ।"

"ଆଚ୍ଛା, ଦେଖାଯାଉ ।" ଏହାପରେ ସେ ଶକ୍ତିବର୍ମାଙ୍କୁ ଗୋଟାଏ ଯୋଜନା କହିଲେ ।

ଭେକ ନଥିଲେ ଭିକ ମିଳେ ନା

ସେହି ଅନୁସାରେ ପରଦିନ ଜୟଙ୍କୁ ପ୍ରଥମେ ସେନାପତିଙ୍କ ସିରସ୍ତାକୁ ଆସି ତା'ପରେ ମନ୍ତ୍ରୀଙ୍କୁ ଦେଖା କରିବାକୁ ନିର୍ଦ୍ଦେଶ ଦିଆଗଲା । ବିଜୟଙ୍କୁ ବି ଏକା ନିର୍ଦ୍ଦେଶ ଦିଆଗଲା, ତେବେ ତାଙ୍କୁ ଭିନ୍ନ ସମୟ ଦିଆଗଲା ।

ଜୟ ଆସି ମନ୍ତ୍ରୀଙ୍କୁ ଭେଟିବା ମାତ୍ରେ ମନ୍ତ୍ରୀ କହିଲେ, "ତମକୁ ସେନାପତି ପଦ ମିଳି ସାରିଛି । କିନ୍ତୁ, ଦେଖ ବିଜୟ, ତମେ ଆମ ପୂର୍ବ ସେନାପତିଙ୍କ ଭଳି ଦକ୍ଷ ହେବ, ରାଜା ଏଇଆ ଆଶା କରନ୍ତି ।"

ଜୟ ଉତ୍କଣ୍ଠିତ ହୋଇ କହିଲା, "ମୋ ନାମ ବିଜୟ ନୁହେଁ, ଜୟ ।"

"ଆରେ, ସେନାପତିଙ୍କ ସିରସ୍ତାଦାର ତ କହି ପଠାଇଲା ସେ ବିଜୟଙ୍କୁ ମୋ ପାଖକୁ ପଠାଉଛି !" ମନ୍ତ୍ରୀ କହିଲେ ।

"କିଛି ଗୋଟାଏ ଭୁଲ ହୋଇ ଯାଇଛି । ମୁଁ ଯାଉଛି, ସିରସ୍ତାଦାରଙ୍କୁ ଡାକି ଆଣିବି ।" ଏହା କହି ଜୟ ଚାଲିଗଲା ।

ଏହା ପରେ ବିଜୟ ପହଞ୍ଚିବାରୁ ମନ୍ତ୍ରୀ କହିଲେ, "ତମେ ଏହି ମୁହୂର୍ତ୍ତରୁ ସେନାପତି ହେଲ । କିନ୍ତୁ, ଜୟ, ତମେ ଆମ ପୂର୍ବ ସେନାପତି ଭଳି ଦକ୍ଷ ହେବ—ରାଜା ଏହି ଆଶା କରନ୍ତି ।"

"ମନ୍ତ୍ରୀବର, ମୋର ନାମ ଜୟ ନୁହେଁ ବିଜୟ । ସିରସ୍ତାଦାର ମୋତେ କହିଲା, ମୁଁ, ଅର୍ଥାତ୍ ବିଜୟ, ସେନାପତି ରୂପେ ନିଯୁକ୍ତ ପାଇଛି । ଆପଣ ବିଜୟ ପରିବର୍ତ୍ତେ ଜୟ ଶୁଣିଛନ୍ତି ।" ଏତକ କହି ବିଜୟ ଜଣେ ପ୍ରହରୀ ଆଡ଼େ ବୁଲିପଡି କହିଲା, "ସିରସ୍ତାଦାରଙ୍କୁ ଯାଇ କୁହ, ନୂତନ ସେନାପତିଙ୍କ ନିର୍ଦ୍ଦେଶ, ସେ ଏଇକ୍ଷଣି ମନ୍ତ୍ରୀଙ୍କ ଘରକୁ ଆସିବ ।"

"ବେଶ୍, ବେଶ୍, ବିଜୟ! ଠିକ୍ ଅଛି । ମୋର ଭୁଲ ହୋଇଯାଇଥିଲା । ତମେହିଁ ସେନାପତି ।" ମନ୍ତ୍ରୀ କହିଲେ । ସେ ଯାଇ ପୁରୁଣା ସେନାପତିଙ୍କୁ ଗୋପନରେ ହସି ହସି କହିଲେ, "ପଦ ଅନୁସାରେ ମିଜାଜ୍ ଜାହିର କରିବାକୁ ବିଜୟ ସକ୍ଷମ !"



# ସାବାସ୍ ମହାରାଜ !

ରାଜା ଗଲେ ଶିକାର କରିବାକୁ । ସାଥିରେ ଥିଲେ ଜଣେ ଅମାତ୍ୟ । ରାଜା ଚାରି ପାଞ୍ଚଘଣ୍ଟା ବଣ ଭିତରେ ବୁଲାଇ ମଧ୍ୟ ଗୋଟିଏ ବି ଶିକାର ପାଇଲେ ନାହିଁ । ତାଙ୍କ ମୁହଁରେ ବିରକ୍ତି ଫୁଟି ଉଠୁଥାଏ ।

ହଠାତ୍ ଦେଖାଗଲା ହରିଣ ଛୁଆଟିଏ । ରାଜା ତରବରିଆ ତୀର ଯୋଖିଲେ ଓ ମାରିଲେ । କିନ୍ତୁ ହରିଣଛୁଆଠୁଁ ଅନ୍ତତଃ ଦୁଇଗଜ ଛାଡ଼ି ତୀର ପଡ଼ିଲା ।

"ସାବାସ, ମହାରାଜ !" କହିଲେ ଅମାତ୍ୟ ।

ରାଜା ଅପମାନ ଓ କ୍ରୋଧରେ ଲାଲ୍ ଦେଖାଗଲେ ଓ ଅମାତ୍ୟ ଆଡ଼େ କଟମଟ କରି ଅନାଇଲେ । କିନ୍ତୁ ଅମାତ୍ୟ ନିଜକୁ ନିଜେ କହିଲା ଭଳି ଗୁଣୁ ଗୁଣୁ ହୋଇ କହୁଥାନ୍ତି, "ମହାରାଜଙ୍କ ହୃଦୟରେ ଦୟା ଦେଖ ! ବଣକୁ ଆସି ତୀର ନ ମାରିଲେ ହାତ କଲବଲ କରିବ ବୋଲି ସେ ତୀର ମାରିଲେ, କିନ୍ତୁ ହରିଣଟା ଛୁଆ ବୋଲି ତାକୁ ଯେମିତି ନ ବାଜିବ, ସେମିତି ଭାବରେ ମାରିଲେ !"

ରାଜା ଖୁସି ହୋଇଗଲେ ଓ କହିଲେ, "ଅମାତ୍ୟ, ତମେ ମନ୍ତ୍ରୀ ହେବାକୁ ଯୋଗ୍ୟ ।"





# କନକ ଉପତ୍ୟକାର କାହାଣୀ

[ ୭ ]

[ଜୀବନରେ ଦୁଃଖ କ'ଣ ଜାଣିନଥିବା ଜ୍ଞାନ ବିଜ୍ଞାନ ରାଜ୍ୟର ଲୋକଙ୍କୁ ଦୁଃଖର ଦ୍ୱାର ଆଣିଦେବାର ପ୍ରତିଶ୍ରୁତି ଦେଇ ରାଜୁ ଯାଇ ପହଞ୍ଚିଲା ପରବର୍ତ୍ତୀ ମୁଲକରେ । ସେଠି ଏକଦା ଜଣେ ସନ୍ନ୍ୟାସୀଙ୍କ ବିଭୂତି ଯୋଗୁଁ ଲୋକେ ପ୍ରତ୍ୟହ ମନଇଚ୍ଛା ଆକାରର ତରଭୁଜଟିଏ ଉପୁଜାଇ ଖାଇପିଇ ସୁଖରେ ରହୁଥିଲେ, କିନ୍ତୁ ସନ୍ନ୍ୟାସୀ ସେମାନଙ୍କୁ ଦେଇଥିବା ସେ ସୁଯୋଗର ଉଦ୍ଦେଶ୍ୟ ପାଶୋରି ଦେଇଥିଲେ । ସନ୍ନ୍ୟାସୀ ଓ ରାଜୁ ଅଦୃଶ୍ୟ ଭାବରେ ଗୋଟିଏ ମନ୍ଦିର ଭିତରେ ପଶିଲେ । ତା'ପରେ...]

ମନ୍ଦିର ଭିତରେ ନଗରୀର ଶାସନ-ସମିତିର ବୈଠକ ହେଉଥିଲା । ଜଣେ ଦୀର୍ଘକାୟ ବ୍ୟକ୍ତି କହୁଥିଲେ, "ସୁଖର କଥା, ଆମେ ଏ ବର୍ଷ ତିନୋଟିଯାକ 'ପାପ'କୁ କାବୁ କରି ପାରିଛୁଁ । ବଳି ପାଇ ଦେବୀ ଆପ୍ୟାୟିତା ହେବେ ।"

"ସେମାନଙ୍କୁ ଥରେ ଦେଖିବା ।" ନଗରୀର ସର୍ଦ୍ଦାର କହିଲେ ।

ଦୀର୍ଘକାୟ ବ୍ୟକ୍ତିଟି ସମିତିର ସଦସ୍ୟମାନଙ୍କୁ ଗୋଟାଏ ପ୍ରକାଣ୍ଡ ପଞ୍ଜରା ପାଖକୁ ନେଇଗଲେ । ତହିଁ ଭିତରେ ଥିଲେ ତିନୋଟି ହୃଷ୍ଟପୁଷ୍ଟ ବନ୍ଦୀ ।

ମନୋଜ ଦାସ



“ସେ ନଗ୍ନଆଟି ହେଲା କାମ; ଦାଢ଼ୀଆ ଜଣକ କ୍ରୋଧ ଏବଂ ସେ ପଟେଡବନ୍ତଟି ଲୋଭ ।” ଦୀର୍ଘକାୟ ବ୍ୟକ୍ତିଟି ଚିହ୍ନାଇଦେଲା । ସମିତିର ସଭ୍ୟମାନେ ତା'ପରେ ଯେଉଁ ତୀକ୍ଷ୍ଣ ତରବାରି ସାହାଯ୍ୟରେ କାମ କ୍ରୋଧ ଲୋଭ ବଳି ପଡ଼ିବା କଥା, ସେ ଗୋଟିକର ଧାର ପରୀକ୍ଷା କରି ସନ୍ତୋଷ ପ୍ରକାଶ କଲେ ।

ଅଦୃଶ୍ୟ ସନ୍ନ୍ୟାସୀ ଅଦୃଶ୍ୟ ରାଜୁକୁ କହିଲେ, “ଏ ନଗରୀକୁ ଏହିକ୍ଷଣି ଧ୍ୱଂସ କରିଦେବାକୁ ମନ ହେଉଛି !”

କହିବା ବାହୁଲ୍ୟ, ତାଙ୍କର ସେ କ୍ରୁଦ୍ଧ କଣ୍ଠସ୍ୱର ରାଜୁ ବ୍ୟତିରେକେ ଆଉ କେହି ଶୁଣିପାରିଲେ ନାହିଁ । ସେ ପୁଣି କହିଲେ, “ମୁଁ ଏ ଅଧମମାନଙ୍କ ପୂର୍ବପୁରୁଷଙ୍କୁ ସେମାନଙ୍କ ନିଜ ଚେତନାର କାମ କ୍ରୋଧ ମୋହ ଉପରେ ଦିବ୍ୟଶକ୍ତି ଆଗରେ ତ୍ୟାଗ କରିବାକୁ ହେବ, ତାହା ବୁଝାଇଥିଲି । ସେମାନେ କେତୋଟି ହତଭାଗ୍ୟ ବିଦେଶୀଙ୍କୁ ଧରି ଆଣି ସେମାନଙ୍କୁ ଗୋଟାଏ ଗୋଟାଏ ଦୁର୍ଗୁଣ ନାମରେ ନାମିତ କରି ବଳି ଦେଇ କର୍ତ୍ତବ୍ୟ ସମ୍ପାଦନ କରୁଛନ୍ତି ! ହାୟରେ ମଣିଷ !”

ସେ ଦୀର୍ଘକାୟ ଲୋକଟି ଏ ବର୍ଷ ତିନୋଟିଯାକ 'ପାପ' କାବୁ କରି ପାରିଥିବାର ଅର୍ଥ ବର୍ତ୍ତମାନ ରାଜୁ ପାଖରେ ସ୍ପଷ୍ଟ ହୋଇଗଲା ।

ଅଦୃଶ୍ୟ ଭାବରେ ନଗରୀ ଭିତରେ ଆଉ କିଛି ସମୟ ବୁଲି ସେମାନେ ଆହୁରି କେତେ କଥା ଜାଣିଗଲେ । ସେ ଯୌଗିକ ତରଭୁଜରୁ ନଗରବାସୀମାନେ ବିପୁଳ ଲାଭ କରନ୍ତି । ପ୍ରତିଦିନ ସନ୍ଧ୍ୟାରେ ବର୍ତ୍ତମାନର ସର୍ଦ୍ଦାର ପାହାଡ଼ ଆରୋହଣ କରି କେତେ ସଂଖ୍ୟାରେ ଲୋକଙ୍କ ତୃଷ୍ଣା ମେଣ୍ଟାଇବା ଲାଗି ତରଭୁଜ ପ୍ରୟୋଜନ, ସେକଥା ଉଚ୍ଚକଣ୍ଠରେ କହିଯାଏ । ଗ୍ରାମ ଗ୍ରାମାନ୍ତରରୁ ଆସି ଆତିଥ୍ୟ ଗ୍ରହଣ କରିଥିବା ବ୍ୟକ୍ତିମାନେ ମଧ୍ୟ ସେ ସଂଖ୍ୟାର ଅନ୍ତର୍ଭୁକ୍ତ । ସକାଳେ ପାହାଡ଼ ଉପରେ ବିଶାଳ ତରଭୁଜ ଆବିର୍ଭୂତ ହୋଇ ସୂର୍ଯ୍ୟ କିରଣରେ ଝଲସିତ ହେବାର ସେ ଅଦ୍ଭୁତ ଦୃଶ୍ୟ ତଥା ତରଭୁଜର ଅବର୍ଣ୍ଣନୀୟ ସ୍ୱାଦରେ ଆକୃଷ୍ଟ ହୋଇ ହଜାର ହଜାର ନରନାରୀ ସେଠାକୁ ଆସି ସପ୍ତାହଶେଷ ବିତାଉଥିଲେ । ଅବଶ୍ୟ ଅତିଥି-ଭବନରେ ସ୍ଥାନ

ପାଇଁ ଓ ଚରଭୁଜର ସାମାନ୍ୟ ଅଂଶ ପାଇଁ ସେମାନଙ୍କୁ ପ୍ରଚୁର ମୂଲ୍ୟ ଦେବାକୁ ପଡୁଥିଲା ।

ଏହିପରି ଭାବରେ ଜଣେ ଭାଗ୍ୟବାନ ପୂର୍ବ-ପୁରୁଷଙ୍କ ଦ୍ୱାରା ପ୍ରାପ୍ତ ବର ଉପରେ ସେ ବସତିର ଜନସାଧାରଣ ନିଜ ନିଜର 'ଉନ୍ନତି' ସାଧନ କରି ଦୀର୍ଘସମୟ ଶୋଇବା ଅଥବା ଘୁଙ୍ଗୁଡ଼ି ମାରିବା ଭଳି ପ୍ରତିଯୋଗିତାରେ ବ୍ୟସ୍ତ ହୋଇ କାଳ କାଟୁଥିଲେ; ବର୍ଷକରେ ଥରେ ବିଦେଶରୁ ମଣିଷ କିଣି ଅଥବା ହରଣଚାଳ କରିଆଣି ସେମାନଙ୍କୁ ବଳି ଦେଉଥିଲେ ।

ସୂର୍ଯ୍ୟାସ୍ତ ବେଳକୁ ସନ୍ନ୍ୟାସୀ ଓ ରାଜୁ ପୁଣି ପାହାଡ଼ ଶୀର୍ଷକୁ ଲେଉଟି ଆସିଥାନ୍ତି । ଚରଭୁଜ ଲଣ୍ଠା ପାଖରେ ଗୋଟିଏ ପଥର ଉପରେ ବସି ଦୁହେଁ ଗପସପ କଲାବେଳେ ଝଲମଲ ପୋଷାକ ପରିହିତ ନଗରର ସର୍ଦ୍ଦାର ଆସି ସେଠାରେ ପହଞ୍ଚିଲା । ସେ ଗୁମ୍ଫାର ଦ୍ୱାର ଖୋଲା ଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ଏଣେତେଣେ ଅନାଇବା ସଙ୍ଗେ ସଙ୍ଗେ ଥରେ ଗୁମ୍ଫାର ଅନ୍ଧକାର ଅଭ୍ୟନ୍ତର ଭିତରକୁ ଦୃଷ୍ଟିପାତ କରିବାକୁ ଚେଷ୍ଟା କଲା । ସେଥିରେ କିଛି ଲାଭ ନ ହେବାରୁ ସେ ଚିରାଚରିତ ଅଭ୍ୟାସ ଅନୁସାରେ ନିଜ ବରାଦ ଶୁଣାଇଦେଲା : "ଆଗାମୀ କାଲି କୋଡ଼ିଏ ହଜାର ମଣିଷଙ୍କ କ୍ଷୁଧା ମେଣ୍ଟାଇବା ଭଳି ଚରଭୁଜ ଲୋଡ଼ା ।"

"କୋଡ଼ିଏ ହଜାର?" ପ୍ରଶ୍ନ କଲେ ସନ୍ନ୍ୟାସୀ । ସେ ନିଜକୁ ତଥା ରାଜୁକୁ ଏଥର ଦୃଶ୍ୟମାନ କଲେ ।

ବର୍ଷ ବର୍ଷ ଧରି ସେଠି ସର୍ଦ୍ଦାର କେବଳ ନିଜ କଣ୍ଠସ୍ୱର ନିଜେହିଁ ଶୁଣି ଆସୁଥିଲା । ଆଜି





ହଠାତ୍ ଏକ ଦ୍ୱିତୀୟ ସ୍ୱର ଶୁଣି ସେ ଚମକି ପଡ଼ିଲା ।

"ଆପଣ କିଏ ଆଜ୍ଞା ?" ସେ ସସଙ୍କୋଚରେ ପ୍ରଶ୍ନ କଲା ।

"ତମେ କ'ଣ ଗୁମ୍ଫା ଭିତରେ ଥିବା ସନ୍ନ୍ୟାସୀଙ୍କ କଥା ଶୁଣି ନଥିଲ ? ତାଙ୍କର ବାଉଁଶରୁ ତରଭୁଜ ଫଳେ ବୋଲି ଜାଣି ନଥିଲ ?" ସନ୍ନ୍ୟାସୀ ପଚାରିଲେ ।

"ଶୁଣିଥିଲି ଯେ, କିନ୍ତୁ ମୁଁ ଭାବିଥିଲି ତାହା ଗୋଟାଏ କାହାଣୀ କିମ୍ବଦନ୍ତୀ ମାତ୍ର !"

"ଯଦି ତରଭୁଜଟି ବାସ୍ତବ ହେଲା ତେବେ ତାହାର ଉତ୍ସ କାହାଣୀ କିମ୍ବଦନ୍ତୀ ମାତ୍ର ହେବ କପରି ?"

ସର୍ଦ୍ଦାର ସନ୍ନ୍ୟାସୀଙ୍କର ଏ ପ୍ରଶ୍ନର ଉତ୍ତର ଦେଇ ପାରିଲା ନାହିଁ । ସନ୍ନ୍ୟାସୀ ପୁଣି ଆଗେଇ ଆସି କହିଲେ, "ଏହି ହେଉଛି ବାସ୍ତବତା । ମଣିଷ ସ୍ୱର୍ଗକୁ ସ୍ୱୀକାର କରିବ, କିନ୍ତୁ ସ୍ୱର୍ଗର ସୃଷ୍ଟି ପରି ଜଣେ ଅଦ୍ଭୁତ ଶିଳ୍ପୀର କଳ୍ପନା ଓ କଳା କୁଶଳତାକୁହିଁ ସମ୍ଭବ ହୋଇପାରିଥାଏ, ସେକଥା ଚିନ୍ତା କରାଯାଇବ ନାହିଁ ।"

ଯୁବକ ସର୍ଦ୍ଦାରର ଅବସ୍ଥା ଅସ୍ଥିର ଦେଖାଗଲା । ପରେ ସେ ନିଜକୁ ସ୍ୱାଭାବିକ କରିବା ଆରମ୍ଭ କରିବା ଉଦ୍ଦେଶ୍ୟରେ କହିଲା, "ସନ୍ନ୍ୟାସୀ ମହାଶୟ, ଆପଣ ଗୁମ୍ଫା ଭିତରୁ ବାହାରି ଆସିଲେ, ଭଲ କଲେ । ଆମେ ଆପଣଙ୍କୁ ଗୁମ୍ଫା ତୁଳନାରେ ଅଧିକ ଚମତ୍କାର ରହିବା ଘର ଯୋଗାଇ ଦେବୁ । ଗତ କେତେ ଯୁଗ ଧରି ଆପଣ କନ୍ଦ ଖାଇପିଇ କରିଛନ୍ତି କି ନା ସନ୍ଦେହ । କିନ୍ତୁ, ଆପଣଙ୍କ ପାଇଁ ନାନା କିସମର ସୁଖାଦ୍ୟର ବ୍ୟବସ୍ଥା କରିଦେବା । ସେଥିରୁ ଅନେକ ଖାଦ୍ୟ ଆପଣ ଦେଖି ନଥିବେ, କାରଣ ଆପଣ ନିଜକୁ ଗୁମ୍ଫାରୁଦ୍ଧ କରିବା ଯୁଗରେ ସେସବୁର ଉଦ୍ଭାବନ ହୋଇ ନଥିଲା ! ହଁ, ଆମିଷ ଚଳେ ନା ଆପଣ କେବଳ ନିରାମିଷାଶୀ ?"

"ଚୁପ୍ !"

ସନ୍ନ୍ୟାସୀଙ୍କ ଧମକରେ ସର୍ଦ୍ଦାରର ମୁହଁ ଶେତା ପଡ଼ିଗଲା । "ତମେ ମୋ ପ୍ରଶ୍ନର ଉତ୍ତର ଦେଇନାହଁ ଏଯାଏ । କୋଡ଼ିଏ ହଜାର ଲୋକ ଖାଇଲେ ଭଲ ଏତେ ବଡ଼ଟି ତରଭୁଜ ତମର କାହିଁକି ଲୋଡ଼ା ?" ସନ୍ନ୍ୟାସୀ ପ୍ରଶ୍ନ କଲେ ।

"ଆଜ୍ଞା, ଆମ ନଗରବାସୀଙ୍କ ସଂଖ୍ୟା ବର୍ତ୍ତମାନ ପନ୍ଦର ହଜାର । ଆଉ ପାଞ୍ଚହଜାର ସହରକ ପର୍ଯ୍ୟଟକ ଆସି ଅଭତ୍ର ହୋଇଛନ୍ତି । ସେମାନେ ଚରଭୁଜ ବାବଦରେ ପଇସା ଦେବେ । ଏଣିକି ଆପଣଙ୍କୁ ସେ ଉପାର୍ଜନରୁ ଅଂଶ ଦେବା କଥା ବି ବିବେଚନା କରି ଦେଖାଯାଇପାରେ । ହଁ, ମୋ ମୁଣ୍ଡକୁ ଆଉ ଗୋଟାଏ ବଢିଆ ଯୋଜନା ଆସିଗଲାଣି । ଆପଣ ଯଦି ଚରଭୁଜ ପାଖରେ ବସି ରହିବେ, ଆପଣଙ୍କୁ ଦେଖିବା ବାବଦରେ ଲୋକଙ୍କୁ କିଛି ଅଧିକା ପଇସା ଦେବାକୁ ବି କୁହାଯାଇ ପାରେ । ସେ ଆୟର ଗୋଟାଏ ବଡ଼ ଅଂଶ ଆପଣଙ୍କ ସେବାରେ ଖର୍ଚ୍ଚ ହେଉ—ଆପତ୍ତି ନାହିଁ !" ସର୍ଦ୍ଦାର ବେଶ୍ ଅର୍ଥପୂର୍ଣ୍ଣ ଓ ଦୟାର୍ଦ୍ର ହସ ଫୁଟାଇ କହିଲା ।

"ଷ୍ଟପ୍ !"

ସନ୍ନ୍ୟାସୀଙ୍କର ଏ ଦ୍ୱିତୀୟଥର ଧମକରେ ସେ ପାହାଡ଼ ଥରଗଲା ଭଳି ମନେ ହେଲା । ସେ କହିଲେ, "କାଲି ସକାଳ ବେଳକୁ ଏଠି ଉପୁଜିଥିବ ଗୋଟାଏ ରାକ୍ଷସୀ ଚରଭୁଜ । ସେହି ଶେଷ ଚରଭୁଜ ଫାଟି ତମ ନଗରୀକୁ ଶେଷ କରିଦେବ । ଯାଅ ଏଥର !"

ସର୍ଦ୍ଦାର ବୁଲପଡି ପଳାଇଗଲା । ଅନେକ ସମୟ ଧରି ଦିଗନ୍ତକୁ ଅନାଇ ସନ୍ନ୍ୟାସୀ ବସି ରହିଲେ । ସୂର୍ଯ୍ୟ ଅସ୍ତ ଗଲେ । ମେଘମାଳା ଚଳେ ଉଡି ଯାଉଥାନ୍ତି ଘର-ବାହୁଡ଼ା ପକ୍ଷୀମାନେ ।



"ଭାବିଥିଲି, ଚରଭୁଜ-ରୂପୀ ଦୈବୀ ବିସ୍ମୟ ଏ ବସତିର ଲୋକଙ୍କୁ ସବୁବେଳେ ଭଗବାନଙ୍କୁ ସ୍ମରଣ କରାଉଥିବ । କିନ୍ତୁ ସେଭଳି ଚିନ୍ତା ମୋର ନିର୍ବୋଧତା । ଶୂନ୍ୟ ଆକାଶରେ ଝୁଲି ରହିଛନ୍ତି ସୂର୍ଯ୍ୟ ଚନ୍ଦ୍ର ଓ ଅସଂଖ୍ୟ ନକ୍ଷତ୍ର । କାଦୁଅ ପଙ୍କ ଭିତରୁ ଫୁଟି ବାହାରୁଛି ପଦ୍ମ ଫୁଲ । ଏସବୁ ଦୈବୀ ବିସ୍ମୟ ଯଦି ମଣିଷ ହୃଦୟରେ ମହତ୍ ଭାବନାର ବିକାଶ କରୁନାହିଁ, ଗୋଟାଏ ଚରଭୁଜ ବା ତାହା କରନ୍ତା କିପରି ?" ସନ୍ନ୍ୟାସୀ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ ।

"ବାବା, ଆପଣଙ୍କ ଧମକ ସର୍ଦ୍ଦାର ଓ ସର୍ଦ୍ଦାର ଜରିଆରେ ଅନ୍ୟମାନଙ୍କ ଭିତରେ ସଦ୍‌ବୁଦ୍ଧିର ସଞ୍ଚାର କରିବ ନିଶ୍ଚୟ । ଦୀର୍ଘକାଳ



ଧରି ସେମାନଙ୍କୁ ଯେଉଁ ସୁଯୋଗ ମିଳିଥିଲା, ସେମାନେ ତାହାର ସଦୁପଯୋଗ କରି ନଥିବାରୁ ବର୍ତ୍ତମାନ ଅନୁତାପ କରୁଥିବେ ।" ରାଜୁ କହିଲା ।

"ମୁଁ ସେତେଦୂର ଆଶାବାନ୍ ନୁହେଁ । ମୂଢ଼ତାର କରାମତି କମ୍ ନୁହେଁ । ତମେ ତଳକୁ ଯାଇ ଥରେ ଦେଖି ଆସିପାର ।" ସନ୍ନ୍ୟାସୀ କହିଲେ ।

ପୂର୍ଣ୍ଣିମୀ ରାତି । ରାଜୁ ଧିରେ ଧିରେ ନଗରୀର ମୁଖ୍ୟ ରାସ୍ତାଦେଇ ଅଗ୍ରସର ହୋଇ ସଭାଗୃହ ପାଖରେ ପହଞ୍ଚି ଦେଖିଲା ନଗରବାସୀମାନଙ୍କୁ ସର୍ଦ୍ଦାର ଉଦ୍‌ବୋଧନ ଦେଉଛି । ସନ୍ନ୍ୟାସୀ ଦେଇଥିବା ଧମକ ସତ୍ୟରେ ପରିଣତ ହେଲେ ଯେଉଁ ପରିସ୍ଥିତି ଉପୁଜିବ, ତା'ର ମୁକାବିଲା କରିବା ନିମନ୍ତେ ସେ ଲୋକଙ୍କୁ ଆହ୍ୱାନ ଦେଉଥିଲା ।

ସେ ଉପସ୍ଥାପନ କରୁଥିଲା ଗୋଟାଏ ଅଭିନବ ଯୋଜନା । ଆବାଳବୃଦ୍ଧବନିତା ପ୍ରଭାତରୁ ଆଁ କରି ଠିଆ ହୋଇ ରହିବେ । ତରଭୁଜ ଫାଟି ତଳକୁ ଆସି ନଗରୀକୁ ଧୋଇ ନେଇଯିବା ପୂର୍ବରୁ ସେମାନେ ସମଗ୍ର ତରଭୁଜକୁ ଗ୍ରାସ କରି ପକାଇଥିବେ । ଏମନ୍ତ ପ୍ରକାରେ ସେମାନଙ୍କର ଏକତାବଦ୍ଧ ମୁଖବ୍ୟାଦାନ ସନ୍ନ୍ୟାସୀଙ୍କ ଶାପକୁ ଅକାମୀ କରିଦେବ ।

ସେ ଦିଗରେ ଯଥାରୀତି ପ୍ରସ୍ତୁତ ହେଉଥିଲା । ଲୋକେ ଶପଥ ନେଲେ କି ସେ ରାତିରେ ସେମାନେ ଅଖିଆ ଶୋଇବେ । ତା'ହେଲେ ସକାଳେ ବହୁ ପରିମାଣ ତରଭୁଜ ଭକ୍ଷଣ କରିବାକୁ ସକ୍ଷମ ହେବେ । ଆଦର୍ଶ ପ୍ରତିବେଶୀ-ପ୍ରେମରେ ଉଦ୍‌ବୁଦ୍ଧ ଆଖପାଖ ଅଞ୍ଚଳର ଲୋକେ ମଧ୍ୟ ସେମାନଙ୍କୁ ସହଯୋଗ ଦେବା ନିମନ୍ତେ ପହଞ୍ଚିବାକୁ ଲାଗିଲେ ।

ରାଜୁ ବିମର୍ଷ ବୋଧ କଲା । ଅଧରାତି ବେଳକୁ ସେ ସନ୍ନ୍ୟାସୀଙ୍କ ପାଖକୁ ଲେଉଟିଗଲା ।

ପ୍ରଭାତ ବେଳକୁ ପାହାଡ଼ ତଳେ ଧାଡ଼ି ଧାଡ଼ି ନରନାରୀ ଆଁ କରି ଠିଆ ହେବାର ଦେଖାଗଲା । ପାହାଡ଼ ଉପରେ ସେତେବେଳେ ଉଦ୍‌ଭୂତ ହୋଇଥାଏ ଆଉ ଗୋଟାଏ ପାହାଡ଼ ଭଳି ବିଶାଳକାୟ ତରଭୁଜ! ମୃଦୁ ଉଷା-

ଲୋକରେ ସେ ଯେତିକ ଅପୂର୍ବ, ସେତିକ ଭୀଷଣ ଦିଶୁଥାଏ ।

ହଠାତ୍ ତାହା ଫାଟିଗଲା ଏବଂ ସହସ୍ର ଖଣ୍ଡରେ ପାହାଡ଼ ତଳକୁ ମାଡି ଆସିଲା । ଲୋକେ ପ୍ରସ୍ତୁତ ହୋଇ ରହିଥିଲେ । ସେମାନେ ସେସବୁ ଖଣ୍ଡକୁ ତତ୍‌କ୍ଷଣାତ୍ ଗୋଟାଇ ଗିଳି ପକାଇଲେ । ଧକ୍‌କାର ପ୍ରାବଲ୍ୟରେ କେହି ଯଦି ଭୂତଳଶାୟୀ ହେଉଥାଏ, ସେ ସେହି ଅବସ୍ଥାରେହିଁ ତରଭୁଜ-ଖଣ୍ଡକୁ ଜାବୁଡି ଧରି ତାକୁ ଖାଇ ଯାଉଥାଏ ।

ତା'ପରେ ସମବେତ ଜନତା ଏହି ଅଭାବନୀୟ ଏକତା ତଥା ବିଜୟ ଯୋଗୁଁ ନିଜକୁ ଅଭିନନ୍ଦନ ଜଣାଇ ଗୋଟିଏ ପ୍ରସ୍ତାବ ଗ୍ରହଣ କଲା । ଅତିଥିମାନେ ବିଦାୟ ନେଇ ଚାଲିଗଲେ ।

ଦ୍ୱିପ୍ରହର ବେଳକୁ ନଗରୀ ଦେଖାଗଲା ହତଶ୍ରୀ । ମାତ୍ରାଧିକ ତରଭୁଜ ଭକ୍ଷଣ ଯୋଗୁଁ ଅନେକେ ଅସୁସ୍ଥ କିନ୍ତୁ ଯେଉଁ ବିଷମ ପ୍ରଶ୍ନ କ୍ରମେ ସେମାନଙ୍କ ମନରେ ଭୟାବହ ରୂପ ନେଉଥିଲା, ତାହା ହେଲା, ଏହାପରେ ସେମାନେ କରିବେ କ'ଣ ?

ଯୌଗିକ ତରଭୁଜକୁ ବିକି ଭାଙ୍ଗି ସେମାନେ ସମୃଦ୍ଧ ହୋଇଥିଲେ । ତାହା ବାହାରେ ସେମାନେ ଆଉ କିଛି କରୁ ନଥିଲେ । ବର୍ତ୍ତମାନ ?

ସନ୍ନ୍ୟାସୀ ଯେ କହିଥିଲେ, ତାଙ୍କ ବିଭୂତି-ପ୍ରସୂତ ଶେଷ ତରଭୁଜ ଏ ନଗରୀକୁ ଧ୍ୱସ୍ତ କରିଦେବ, ବିଜ୍ଞ ନାଗରିକମାନେ ବର୍ତ୍ତମାନ ସେ କଥାର ଭିନ୍ନ ବ୍ୟାଖ୍ୟା କରିବାକୁ ଆରମ୍ଭ କରିଥିଲେ । ତରଭୁଜ ଫାଟି ନଗରୀକୁ ଭାଙ୍ଗି ଚୁରି ପକାଇବ ବା ଭସାଇ ନେଇଯିବ, ସନ୍ନ୍ୟାସୀ ବୋଧହୁଏ ତାହାଠୁଁ ଅଧିକ କିଛି ସୂଚାଉଥିଲେ । ସେ ତରଭୁଜହିଁ ହେବ ଶେଷ ତରଭୁଜ ଏବଂ ପରେ ନଗରବାସୀମାନେ ଆଉ ତରଭୁଜରୁ ଲାଭ ଉଠାଇ ନପାରିବା ଫଳରେ କ୍ରମେ ସେମାନଙ୍କ ନଗରୀ ବିଲୁପ୍ତ ହେବ, ସନ୍ନ୍ୟାସୀ ସମ୍ଭବତଃ ତାହାହିଁ ବୁଝାଉଥିଲେ ।

ସନ୍ଧ୍ୟା ହେଲା । ସନ୍ନ୍ୟାସୀ ନଗରୀକୁ ପଛରେ ପକାଇ ଅଗ୍ରସର ହେଲେ । ରାଜୁ ତାଙ୍କୁ ଅନୁସରଣ କଲା ।

(କ୍ରମଶଃ)






# ପୁତ୍ରର କର୍ତ୍ତବ୍ୟ

ନିଶା ଗରଜୁଥାଏ । ହୁହାକୁ ହୁହା ଶୀତଳ ପବନ ସାଙ୍ଗକୁ ଝିପି ଝିପି ବର୍ଷା ହେଉଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଏବଂ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ସେହି ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତୁମର ଅଭାବ କ'ଣ ଯେ ତୁମେ ଏଭଳି ଦୁର୍ଯୋଗପୂର୍ଣ୍ଣ ନିଶୀଥରେ ଏଠାକୁ ଆସିଛ ? ରାଜପୁରୁଷମାନଙ୍କ ବ୍ୟବହାର ବାସ୍ତବିକ ବିଚିତ୍ର । ତୁମକୁ ଗୋଟାଏ

## ବେତାଳ କଥା



ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଲା : ଅନେକ ଦିନ ତଳର କଥା । ମହେନ୍ଦ୍ର ଗିରିରେ ରାଜୁତି କରୁଥିଲେ ରାଜା ପଦ୍ମପାଦ । ଅନେକ ଦିନ ଧରି ତାଙ୍କର କୌଣସି ସନ୍ତାନ ସନ୍ତତି ହୋଇ ନଥିଲେ । ଶେଷକୁ ପୁଅଟିଏ ହେଲା । ତା'ର ନାମ ରଖାଗଲା ପ୍ରବୀଣ । ରାଜା ସେ ପୁଅ ପ୍ରତି ଅତ୍ୟନ୍ତ ସ୍ନେହାସକ୍ତ ହେଲେ । ତା' ପାଇଁ ରାଜ୍ୟର ସବୁଠାରୁ ଦକ୍ଷ ମିସ୍ତ୍ରୀମାନଙ୍କୁ ଲଗାଇ କେତେ ପ୍ରକାର ଖେଳନା ତିଆରି କରାଯାଉଥାଏ ! ରାଜକୁମାରଙ୍କୁ ଯେଉଁ ମିଷ୍ଟାନ୍ନ ଭଲ ଲାଗୁଥାଏ, ସେ ମିଷ୍ଟାନ୍ନର ପ୍ରସ୍ତୁତକାରୀକୁ ପୁରସ୍କାର ଦିଆଯାଇ ଆହୁରି ଉତ୍କୃଷ୍ଟ ମିଷ୍ଟାନ୍ନ ତିଆରି କରିବା ନିମନ୍ତେ ଉତ୍ସାହ ଦିଆ ହେଉଥାଏ ।

ପ୍ରବୀଣଙ୍କୁ ପାଞ୍ଚବର୍ଷ ବୟସ ହେବାରୁ ତାଙ୍କର ବିଦ୍ୟାରମ୍ଭ ହେଲା । ବର୍ଷଟିଏ ସେ ନଅରରେ ରହି ବିଦ୍ୟାଭ୍ୟାସ କଲେ । ତା'ପରେ, ସେ ଯୁଗର ପ୍ରଥା ଅନୁସାରେ ତାଙ୍କୁ ଯାଇ ବଣ ଭିତରେ ଗୋଟିଏ ଗୁରୁକୁଳରେ ରହିବାକୁ ହେଲା ।

ଗୁରୁଙ୍କ ନାମ ସିଦ୍ଧେଶ୍ୱର । ଗୁରୁ ମହୋଦୟ ପ୍ରବୀଣଙ୍କୁ ସର୍ବଦା ସମ୍ମାନ କରି କଥା କହୁଥାନ୍ତି । ଅନ୍ୟ ଛାତ୍ରମାନଙ୍କ ସହ ନ ବସାଇ ତାଙ୍କୁ କୋମଳ ଆସନରେ ବସାଉଥାନ୍ତି । ଅନ୍ୟ ଛାତ୍ରମାନଙ୍କ ସକାଶେ ସାଧାରଣ ଖାଦ୍ୟ ଦିଆ ଯାଉଥାଏ । ପ୍ରବୀଣଙ୍କ ସକାଶେ ବିଶେଷ ବିଶେଷ ଖାଦ୍ୟ ପଦାର୍ଥ ତିଆରି କରା ହେଉଥାଏ ।"

ରାଜପୁତ୍ର ପ୍ରବୀଣଙ୍କୁ ଯେତେବେଳେ ବାରବର୍ଷ ବୟସ ହେଲା, ସେତେବେଳେ ଗୁରୁ କହିଲେ, "ବତ୍ସ ! ତୁମର ଅଧ୍ୟୟନ ଶେଷ ହେଲା । ମୁଁ ରାଜାଙ୍କୁ ଖବର ଦେଉଛି । ସେ ରଥ ପଠାଇ ତୁମ୍ଭଙ୍କୁ ନେଇଯିବାର ବ୍ୟବସ୍ଥା କରିବେ ।"

ପ୍ରବୀଣ କିଛି କହିଲେ ନାହିଁ ।

ପରଦିନ ଦେଖାଗଲା ପ୍ରବୀଣ ଗୁରୁକୁଳରେ ନାହାନ୍ତି । ଛାତ୍ରମାନେ ଓ ସ୍ୱୟଂ ଗୁରୁ ଉତ୍କଣ୍ଠିତ ହୋଇ ସାରା ବଣରେ ଖୋଜିଲେ । ରାଜାଙ୍କୁ ଖବର ଦିଆଗଲା । କିନ୍ତୁ ପ୍ରବୀଣ ମିଳିଲେ ନାହିଁ । ଯାହାହେଉ, ପାଞ୍ଚଦିନ ପରେ ଗୁପ୍ତଚରମାନେ ରାଜାଙ୍କୁ ଜଣାଇଲେ କି ବଣର ଶେଷ ପ୍ରାନ୍ତରେ

ଥିବା ଗୁରୁ ଜ୍ଞାନଶୀଳଙ୍କ ଆଶ୍ରମରେ ଯାଇ ପ୍ରବୀଣ ଆପଣାଛାଏଁ ଭର୍ତ୍ତି ହୋଇଛନ୍ତି ।

ରାଜା ସଙ୍ଗେ ସଙ୍ଗେ କଟୁଆଳଙ୍କୁ ପଠାଇ-ଦେଲେ । ସେ ଯାଇ ରାଜପୁତ୍ରଙ୍କୁ ରଥରେ ବସାଇ ଆଣିବା ସଙ୍ଗେ ସଙ୍ଗେ ଗୁରୁ ଜ୍ଞାନଶୀଳଙ୍କୁ ବନ୍ଦୀ କରି ଆଣିଲେ ।

"ଜ୍ଞାନଶୀଳ ! ମୋ ଗୁପ୍ତଚରଙ୍କଠୁଁ ଶୁଣିଲି, ଗତକାଲି ସନ୍ଧ୍ୟାରେ ରାଜପୁତ୍ର ତୁମ୍ଭ ପାଦସେବା କରିଛନ୍ତି । ଏହା ସତ୍ୟ ?"

ଜ୍ଞାନଶୀଳ କହିଲେ, "ମହାରାଜ ! ପ୍ରବୀଣ ଯେ ରାଜପୁତ୍ର, ସେକଥା ମୁଁ ଜାଣି ନଥିଲି । କେହି କେହି ଛାତ୍ର ଆପଣାଛାଏଁ ଆସି ମୋର ସେବା କରିଥାନ୍ତି । ସେ ତାହାହିଁ କରିଥିଲେ ।"



"ତମେ ଭାବି ରାଜାର ଅପମାନ କରିଛ । ତମକୁ ଯାବଜ୍ଜୀବନ କାରାଦଣ୍ଡ ଭୋଗିବାକୁ ହେବ ।" ରାଜା କହିଲେ । କର୍ମଚାରୀମାନେ ସଙ୍ଗେ ସଙ୍ଗେ ଗୁରୁଙ୍କୁ ଧରିନେଇ ଚାଲିଗଲେ । ପ୍ରବୀଣ ଗୁରୁଙ୍କ ସକାଶେ କିଛି କହିବାକୁ ଯାଉଛନ୍ତି, ସେତିକବେଳେ ରାଜା ତାଙ୍କୁ କୁଣ୍ଢାଇ ପକାଇ କହିଲେ, "ଆହା, ମୋ ପୁଅର କଅଁଳା ହାତକୁ କେତେ ବାଧିଥିବ !"

ରାଜପୁତ୍ରଙ୍କୁ ସେ କିଛି କୁହାଇ ଦେଲେନାହିଁ । ସେ ହଜିଯାଇ ମିଳିଥିବା ଯୋଗୁଁ ରାଜଧାନୀରେ ଉତ୍ସବ ସକାଶେ ସେ ନିର୍ଦ୍ଦେଶ ଦେଲେ ।

କେତେବର୍ଷ ବିତିଗଲା । ରାଜା ଯଥାବିଧି ପ୍ରବୀଣଙ୍କୁ ଯୁବରାଜ ପଦରେ ବସାଇଲେ । କିନ୍ତୁ ସେ ପ୍ରବୀଣଙ୍କୁ କିଛି କରିବାକୁ ଦେଉ ନଥାନ୍ତି । ଖାଲି ପ୍ରବୀଣ କିପରି ଅଧିକରୁ ଅଧିକ ସୁଖରେ ରହିବେ, ସେହି ବ୍ୟବସ୍ଥା କରୁଥାନ୍ତି ।

ଦିନେ ପ୍ରବୀଣ ତାଙ୍କ ସାରଥୀକୁ କହିଲେ, "ତମେ ମୋ ପୋଷାକ ପିନ୍ଧି ରାଜପୁତ୍ର ସାଜି ରଥରେ ବସ । ମୁଁ ରଥ ଚଳାଇବି ।" ସାରଥୀ ରାଜି ହେଉ ନଥିଲେ । କିନ୍ତୁ ଯୁବରାଜ-କହିଲେ, "ଏହା ମୋର ଆଦେଶ ।" ବାଧ୍ୟ ହୋଇ ସାରଥୀ ଯୁବରାଜ ସାଜି ରଥରେ ବସିଲେ । ଯୁବରାଜ ରଥ ଚଳାଇଲେ ।

ଗୋଟିଏ ଗାଁ ଭିତରେ ରଥ ଅଟକାଇ ସାରଥୀ-ବେଶୀ ଯୁବରାଜ ଏକ କୁଡ଼ିଆ ଭିତରକୁ ଗଲେ । ଗୋଟିଏ ଅସୁସ୍ଥ ବାଳକକୁ ତା' ମା

ପାଣି ପିଇବାକୁ ଦେଉଥାନ୍ତି । ଯୁବରାଜ କହିଲେ, "ରଥରେ ଯୁବରାଜ ବସିଛନ୍ତି । ତାଙ୍କୁ ଶୋଷ କରୁଛି । ପାଣି ଟିକିଏ ମିଳିବ ?"

ସଙ୍ଗେ ସଙ୍ଗେ ଅସୁସ୍ଥ ବାଳକ ତା' ମା'କୁ କହିଲା, "ମା, ମୋ ପାଇଁ ଘରେ ପାଣି ଆଣିଦେବ । ଏହା ନେଇ ସଙ୍ଗେ ସଙ୍ଗେ ଯୁବରାଜଙ୍କୁ ଦିଅ । ନହେଲେ ତମକୁ ଗୁରୁ ଜ୍ଞାନଶୀଳଙ୍କ ଦଶା ଭୋଗିବାକୁ ହେବ ।"

ସାରଥୀ-ବେଶୀ ଯୁବରାଜଙ୍କ ମୁହଁ କଳା ପଡ଼ିଗଲା । ସେ ଅବଶ୍ୟ ପାଣି ଆଣି ବା'ହାରେ ନିଜେ ପିଇଦେଇ ବୁଢ଼ୀଠୁଁ ବିଦାୟ ନେଇ ପୁଣି ରଥ ଚଳାଇଲେ, କିନ୍ତୁ ସେ ବୁଝିଲେ, ତାଙ୍କ ପିତା ଜନସାଧାରଣଙ୍କ ପାଖରେ ଅତ୍ୟନ୍ତ ଅପ୍ରିୟ ।

ରାଜପୁତ୍ର ପ୍ରବୀଣ ରଥ ଚଳାଉଥାନ୍ତି ଠିକ୍, କିନ୍ତୁ ସେ ବିଷୟରେ ତାଙ୍କର ଅଭ୍ୟାସ ନଥିଲା । ଫଳରେ ଗୋଟାଏ ସ୍ଥାନରେ ବାଙ୍କ ମୋଡ଼ିବା ସମୟରେ ସେ ଘୋଡ଼ାଙ୍କୁ ଆୟତ୍ତ କରି ନ ପାରିବାରୁ ରଥ ଓଲଟି ପଡ଼ିଲା । ଉଭୟ ରାଜପୁତ୍ର ଓ ସାରଥୀ ସାମାନ୍ୟ ଆହତ ହେଲେ ।

ଗୁପ୍ତଚରଙ୍କଠାରୁ ଏ ଖବର ରାଜା ପାଇଗଲେ । ସେ ସଙ୍ଗେ ସଙ୍ଗେ ସାରଥୀକୁ ଡାକି କର୍କଶ ଭାବରେ ଗାଳିଦେଲେ ଓ କହିଲେ, "ତମ ମୁଣ୍ଡ କାଟ ହେବା ଉଚିତ ।"

ରାଜପୁତ୍ର ପ୍ରବୀଣ ଆସି କହିଲେ, "ପିତା ! ରଥ ଚଳାଉଥିଲି ମୁଁ । ତା'ର ଦୋଷ ନାହିଁ ।" ରାଜା ସଙ୍ଗେ ସଙ୍ଗେ ଆଖିରୁ ଲୁହ ଗଡ଼ାଇ ପୁଅକୁ ଆଉଁସି କହିଲେ, "ପୁଅ ! ସେ



ତୋତେ ରଥ ଚଳାଇବାକୁ ଛୁଟି ଦେଇ ଅପରାଧ କରିଛି । ଆଜି ଯଦି ଦୁର୍ଘଟଣାରେ ତୋର କିଛି ବିଶେଷ ଅନିଷ୍ଟ ହୋଇଥାନ୍ତା, ତେବେ ମୁଁ ବଞ୍ଚନ୍ତି କି ?" ଏହା କହି ରାଜା ସାରଥୀକୁ କାରାଗାରକୁ ପଠାଇଦେଲେ । ପ୍ରଥା ଅନୁସାରେ ଯାହାକୁ ପ୍ରାଣଦଣ୍ଡ ଦିଆ ହୋଇଥାଏ, ସକାଳେ ଯାଇ ସେ ଦଣ୍ଡ କାର୍ଯ୍ୟକାରୀ ହୁଏ ।

ରାଜପୁତ୍ର ରାତିରେ ଶୋଇ ପାରିଲେ ନାହିଁ । ସକାଳ ହେବା ମାତ୍ରେ ନିର୍ଦ୍ଦୋଷ ସାରଥୀର ମୁଣ୍ଡକାଟ ହେବ, ଏହାହିଁ ତାଙ୍କୁ ବିମର୍ଷ କରିଥିଲା । ମଧ୍ୟ ରାତ୍ର ପରେ ତାଙ୍କୁ ଟିକିଏ ନିଦ ଧରି ଆସିଛି, ହଠାତ୍ ସେ ଶୁଣିଲେ କାହାର ଗମ୍ଭୀର କଣ୍ଠସ୍ୱର, "ପ୍ରବୀଣ! ମୃତ୍ୟୁହିଁ ତମର ପ୍ରାପ୍ୟ !" ସେ ଚମକିପଡି ଦେଖିଲେ ଜଣେ ଯୁବକ ଛୁରୀ ଉଠାଇ ତାଙ୍କୁ ମାରିବାକୁ ଉଦ୍ୟତ । ପ୍ରବୀଣ ତା' ହାତ ଧରି ପକାଇ ତାକୁ ଚିହ୍ନିଲେ । ସେ ବଲ୍ଲଭ । ଜ୍ଞାନଶୀଳଙ୍କ ଆଶ୍ରମରେ ପ୍ରବୀଣ ଯେଉଁ କେତୋଟି ଦିନ କଟାଇଥିଲେ, ତହିଁ ଭିତରେ ଏହି ବଲ୍ଲଭ ତାଙ୍କର ଏକାନ୍ତ ଅନ୍ତରଙ୍ଗ ବନ୍ଧୁ ହୋଇ ଯାଇଥିଲେ ।

"ବଲ୍ଲଭ ! ତମେ ମୋତେ ହତ୍ୟା କରିବାକୁ ବସିଥିଲ !" ପ୍ରବୀଣ ଆଶ୍ଚର୍ଯ୍ୟ ହେଲେ ।

"ନିଷ୍ଠୁର ! ବହୁ କଷ୍ଟରେ ପ୍ରହରୀମାନଙ୍କ ଆଖିରେ ଧୂଳିଦେଇ ନଅରରେ ପ୍ରବେଶ କଲି । ମୋର ପୂଜନୀୟ ଗୁରୁଦେବ ବିନା ଅପରାଧରେ କାରାଦଣ୍ଡ ଭୋଗିବାର ପ୍ରତିଶୋଧ କିପରି ନିଅନ୍ତି ? ପୁଣି ସକାଳେ ତମ ନିରୀହ ସାରଥୀ ପ୍ରାଣଦଣ୍ଡ ଭୋଗିବ । ତମେ ଏସବୁ ସହ୍ୟ କଲାଭଳି ନିର୍ମମ ହେଲ କିପରି ?"





ଆଶ୍ଚର୍ଯ୍ୟ ହୋଇଗଲେ । ଯୁବରାଜ କହିଲେ, "ମୁଁ ଯାହା ମାଗିବି, ତାହା ଦେବେ ?" ପ୍ରବୀଣ ପଚାରିଲେ ।

"ତୁ ଯଦି ମୋର ପ୍ରାଣ ମାଗିବୁ, ତାହା ବି ଦେଇଦେବି ।" ରାଜା କହିଲେ ।

"ପିତା ! ମୁଁ ବର୍ତ୍ତମାନ ଜାଣିଲି, ସୂର୍ଯ୍ୟୋଦୟ ପୂର୍ବରୁ ପୁତ୍ରର କର୍ତ୍ତବ୍ୟ କରି ମୋତେ ସିଂହାସନରେ ବସିବାକୁ ହେବ । ମୋତେ ଆଉ କିଛି ପଚାରନ୍ତୁ ନାହିଁ । ଏତିକି ଜାଣନ୍ତୁ, ଆପଣଙ୍କ ମଙ୍ଗଳ ପାଇଁ ମୁଁ ଏହା କରୁଛି ।" ପ୍ରବୀଣ କହିଲେ ।

ରାଜା ସ୍ତବ୍ଧ ହୋଇଗଲେ । କିନ୍ତୁ ସେ ସମ୍ମତି ଦେଲେ । ତତ୍‌କ୍ଷଣାତ୍ ପୁରୋହିତ ଓ ମନ୍ତ୍ରୀବର୍ଗଙ୍କୁ ଡକା ହେଲା । ସୂର୍ଯ୍ୟୋଦୟ ପୂର୍ବରୁ ପ୍ରବୀଣ ସିଂହାସନାରୂଢ଼ ହେଲେ । ରାଜା ହୋଇ ପ୍ରବୀଣ ସଙ୍ଗେ ସଙ୍ଗେ ଗୁରୁ ଜ୍ଞାନଶୀଳ ଓ ସାରଥୀଙ୍କୁ କାରାମୁକ୍ତ କରି କ୍ଷମା ପ୍ରାର୍ଥନା କଲେ । ତା'ପରେ ବଲ୍ଲଭଙ୍କୁ କହିଲେ, "ବନ୍ଧୁ ! ତମେ ହେବ ମୋର ପ୍ରଧାନ ମନ୍ତ୍ରୀ !"

ବଲ୍ଲଭ ସମ୍ମତ ହେଲେ ।

ବେତାଳ ଟିକିଏ ଚୁପ୍ ରହି ତା'ପରେ କଣ୍ଠସ୍ୱର ତୀବ୍ର କରି ପଚାରିଲା, "ରାଜା । ଆଉ ସବୁ ବୁଝି ହେଉଛି, କିନ୍ତୁ ପ୍ରବୀଣ ରାଜାଙ୍କ ମଙ୍ଗଳ ପାଇଁ କିପରି ନିଜେ ସିଂହାସନରେ ବସିବାକୁ ଚାହାନ୍ତି ବୋଲି କହିଲେ ? ପୁଣି ଏହାଦ୍ୱାରା ସେ ପୁତ୍ରର କର୍ତ୍ତବ୍ୟ କରୁଛନ୍ତି ବୋଲି କହିପାରିଲେ

"ମୁଁ ନିର୍ମମ ନୁହେଁ । କିନ୍ତୁ ମୋ ପିତା ମୋ ପ୍ରତି ଏତେ ସ୍ନେହାସକ୍ତ ଯେ ତାଙ୍କ କଥା ଉପରେ ମୁଁ କିଛି କହି ପାରୁନାହିଁ ।" ଦୀର୍ଘ ନିଃଶ୍ୱାସ ଛାଡି ପ୍ରବୀଣ କହିଲେ ।

"ତମେ ଇଚ୍ଛା କଲେ ତାଙ୍କର ସେହି ସ୍ନେହାସକ୍ତିକୁ ତାଙ୍କର ତଥା ରାଜ୍ୟର କଲ୍ୟାଣ ପାଇଁ ଉପଯୋଗ କରିପାରିବ ।"

ପ୍ରବୀଣ ନୀରବ ହୋଇ ବସି ରହିଲେ । ତା'ପରେ ସେ କହିଲେ, "ବୁଝିଲି । ମୁଁ ବର୍ତ୍ତମାନ ଯାହା କରିବାର କରିବି ।"

ସେ ଉଠି ପଡିଲେ । ତା'ପରେ ଯାଇ ନିଜ ପିତାଙ୍କ କୋଠରୀ ଦ୍ୱାରରେ କରାଘାତ କଲେ । ରାଜା ଉଠି ଦ୍ୱାର ଖୋଲି ଯୁବରାଜଙ୍କୁ ଦେଖି

କିପରି ? ଆହୁରି ମଧ୍ୟ ଯେଉଁ ବଲ୍ଲଭ ତାଙ୍କୁ ହତ୍ୟା କରିବାକୁ ବସିଥିଲା, ତାକୁ ସେ ନିଜର ପ୍ରଧାନ ମନ୍ତ୍ରୀ କଲେ କିପରି ? ପୁଣି ଏତେ ତରତରରେ ସେ ସୂର୍ଯ୍ୟୋଦୟ ପୂର୍ବରୁ ରାଜା ହେବାକୁ ବ୍ୟଗ୍ର ହେଲେ କିଆଁ ? ରାଜା, ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ : "ପ୍ରବୀଣ ଛଦ୍ମବେଶରେ ଯାଇ ବୁଝିଥିଲେ ରାଜା ଲୋକଙ୍କ ପାଖରେ କେତେ ଅପ୍ରିୟ । ରାଜାଙ୍କ ଅନ୍ୟାୟ ପ୍ରବଳ ହେଲେ ହୁଏତ ରାଜ୍ୟରେ ବିଦ୍ରୋହ ହୁଅନ୍ତା, ସେଥିରୁ ସେ ରାଜାଙ୍କୁ ରକ୍ଷା କଲେ । ଏହା ହେଲା ଇହଲୋକରେ ରାଜାଙ୍କର ମଙ୍ଗଳ । ରାଜାଙ୍କୁ ପାପଭାରରୁ ରକ୍ଷା କରି ସେ ପାରଲୌକିକ ମଙ୍ଗଳ ମଧ୍ୟ କଲେ । ସେ ପୁତ୍ରର କର୍ତ୍ତବ୍ୟ କରୁଛନ୍ତି ବୋଲି କହିବାର ବିଶେଷ ତାତ୍ପର୍ଯ୍ୟ ଅଛି । ପିତାଙ୍କୁ ନର୍କରୁ ରକ୍ଷା କରିବା ପୁତ୍ରର ପ୍ରଥମ ଭୂମିକା ବୋଲି ଶାସ୍ତ୍ର କହେ । ନିର୍ଦ୍ଦୋଷ ସାରଥୀର ପ୍ରାଣଦଣ୍ଡ ହୋଇଥିଲେ ରାଜା ନର୍କରେ ପଡ଼ିଥାନ୍ତେ । ସେଥିରୁ ପ୍ରବୀଣ ତାଙ୍କୁ ରକ୍ଷା କଲେ । ରାତାରାତି ରାଜା ନହୋଇ ପାରିଲେ ସେ ସାରଥୀକୁ ରକ୍ଷା କରିପାରି ନଥାନ୍ତେ । ଏହାହିଁ ତାଙ୍କ ବ୍ୟଗ୍ରତାର କାରଣ । ବାକି ରହିଲା ବଲ୍ଲଭ କଥା । ବଲ୍ଲଭ ଯଦି ସତରେ ତାଙ୍କୁ ହତ୍ୟା କରିବାକୁ ସ୍ଥିର କରିଥିଲା, ତେବେ ସେ ଛୁରି ମାରିବା ପୂର୍ବରୁ ରାଜପୁତ୍ରଙ୍କୁ ନିଦରୁ ଡାକି ନିଜ ଉଦ୍ଦେଶ୍ୟ ଘୋଷଣା କରି ନଥାନ୍ତା । ସେ କେବଳ ନିଜ ଅସନ୍ତୋଷର ତୀବ୍ରତା ସୂଚାଇ ଦେଉଥିଲା । ସେ ସଚ୍ଚା ତଥା ସାହସୀ ବନ୍ଧୁ ବୋଲି ପ୍ରବୀଣ ବୁଝିଥିଲେ ।"

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



# ଆଶାବାନ ଚୋର

ଧର୍ମଗିରିର ରାଜାଙ୍କ ଗନ୍ତାଘର ଭିତରୁ କିଛି ମୂଲ୍ୟବାନ ରତ୍ନ ଚୋରି ହୋଇଗଲା । ରାଜା ଅତି ବୁଦ୍ଧିମାନ ଭାବରେ ଖ୍ୟାତ ତାଙ୍କର ଜଣେ ଅମାତ୍ୟ ପୃଥ୍ୱୀବର୍ମାଙ୍କୁ ସେ ଚୋରିର ରହସ୍ୟ ଉଦ୍‌ଘାଟନ କରିବାର ଦାୟିତ୍ୱ ଦେଲେ । ପ୍ରକାଶ୍ୟ ଦରବାରରେ ରାଜା ପୃଥ୍ୱୀବର୍ମାଙ୍କୁ କହିଲେ, “ପୃଥ୍ୱୀବର୍ମା ! ତୁମକୁ ସାତଦିନ ସମୟ ଦେଲି । ଯଦି ତୁମେ ଏ ରହସ୍ୟର ସମାଧାନ କରି ନ ପାରିବ, ତେବେ ଅଷ୍ଟମ ଦିନ ସକାଳେ ତୁମ ମୁଣ୍ଡ କାଟ ହେବ ।”

“ମହାରାଜ ! ମୁଁ ନିଶ୍ଚୟ ସଫଳ ହେବି । ଯଦି ନ ହେବି, ତେବେ ଜାଣିବେ ସେ ଚୋର ମୋଠୁଁ ବୁଦ୍ଧିମାନ । ସେଭଳି ବୁଦ୍ଧିମାନ ଲୋକକୁ ଆପଣ ମୋ ମୃତ୍ୟୁ ପରେ ଆପଣଙ୍କର ମନ୍ତ୍ରୀ କରିବା ଉଚିତ ।” ପୃଥ୍ୱୀବର୍ମା କହିଲେ । “ମୁଁ ସ୍ୱୀକାର କରୁଛି ।” ରାଜା କହିଲେ ।

ସାତଦିନ ବିତିଗଲା । ଘୋଷଣା ହୋଇଗଲା ଯେ ସକାଳେ ପୃଥ୍ୱୀବର୍ମାଙ୍କ ମୁଣ୍ଡ କାଟ ହେବ । ରାତିରେ ଗନ୍ତାଘରର ଜଣେ ସହକାରୀ ତତ୍ତ୍ୱାବଧାରକ ଆସି ତାଙ୍କୁ କହିଲେ, “ମହାଶୟ, ସକାଳେ ତ ଆପଣ ମରିବେ । କିନ୍ତୁ ବୁଦ୍ଧିମାନ ଚୋରକୁ ମନ୍ତ୍ରୀ କରିବା କଥାର କପର କ'ଣ ହେବ ?”

ପୃଥ୍ୱୀବର୍ମା ହସି କହିଲେ, “ମୁଁ ତୁମକୁ ଅପେକ୍ଷା କରୁଥିଲି । ଭାଗ୍ୟକୁ ସକାଳ ହୋଇ ନାହିଁ ।” ଏହା କହି ସେ ପ୍ରହରୀ ଡାକି ସେ କର୍ମଚାରୀକୁ ବନ୍ଦୀ କଲେ । ଅନୁସନ୍ଧାନରୁ ପ୍ରମାଣ ହେଲା, ସେହି କର୍ମଚାରୀ ହେଲେ ଚୋର ।





ପ୍ରାଚୀନ ସାହିତ୍ୟର କାହାଣୀ

# ମୁଦ୍ରା ରାକ୍ଷସ-୧

ଶହ ଶହ ବର୍ଷ ତଳର କଥା । ସେତେବେଳେ ମଗଧ ରାଜ୍ୟରେ ରାଜୁତି କରୁଥିଲେ ସର୍ବାର୍ଥସିଦ୍ଧି ନାମକ ରାଜା । ପାଟଳିପୁତ୍ର (ଆଧୁନିକ ପାଟଣା) ଥିଲା ତାଙ୍କ ରାଜଧାନୀ । ତାଙ୍କର ସୁଦକ୍ଷ ମନ୍ତ୍ରୀଙ୍କର ନାମ ହେଲା ରାକ୍ଷସ ।

ରାଜାଙ୍କ କ୍ଷତ୍ରିୟ ପତ୍ନୀଙ୍କଠୁଁ ଜାତ ପୁତ୍ରମାନେ ନନ୍ଦ ବୋଲି ଅଭିହିତ ହେଉଥିଲେ । କିନ୍ତୁ ତାଙ୍କର ଜଣେ ଶୂଦ୍ର ପତ୍ନୀଙ୍କଠୁଁ ଜାତ ପୁଅଙ୍କୁ ମୌର୍ଯ୍ୟ ବୋଲି ଡକାଯାଉଥିଲା । ମୌର୍ଯ୍ୟ ଯେପରି ସାହସୀ, ସେହିପରି ଗୁଣବାନ୍ ଥିଲେ ।





ମୌର୍ଯ୍ୟଙ୍କର ଜଣେ ପୁଅ ଥିଲେ । ନାମ ଚନ୍ଦ୍ରଗୁପ୍ତ । ସାହସ କୌଶଳ, ବୁଦ୍ଧି, ଏସବୁ ଗୁଣରେ ସେ ନନ୍ଦମାନଙ୍କ ତୁଳନାରେ ଅନେକ ଉଚ୍ଚରେ ଥିଲେ । ଅସି ଚାଳନା, ଲକ୍ଷ୍ୟ ଭେଦ ଇତ୍ୟାଦି ସାମରିକ ବିଦ୍ୟାରେ ବି ସେ ଥିଲେ ଅସାଧାରଣ ଦକ୍ଷ ।



ରାଜା ସର୍ବାର୍ଥସିଦ୍ଧିଙ୍କର ମୃତ୍ୟୁ ହେଲା । ମୃତ୍ୟୁଶଯ୍ୟାରେ ମଧ୍ୟ ରାଜା ନନ୍ଦରାଜପୁତ୍ର-ମାନଙ୍କଠୁଁ ମୌର୍ଯ୍ୟଙ୍କ ପ୍ରତି ଅଧିକ ବାତ୍ସଲ୍ୟ ଦେଖାଇଲେ । ଏହା ଫଳରେ ନନ୍ଦମାନେ ମୌର୍ଯ୍ୟଙ୍କ ପ୍ରତି ଅତ୍ୟନ୍ତ ଈର୍ଷା କାତର ହେଲେ ।

ରାଜାଙ୍କ ମୃତ୍ୟୁ ପରେ ନନ୍ଦ ଭ୍ରାତାମାନେ ମୌର୍ଯ୍ୟଙ୍କର ସର୍ବନାଶ କରିବା ନିମନ୍ତେ ଚକ୍ରାନ୍ତ କଲେ । ମଧ୍ୟ ରାତ୍ରରେ ସୈନ୍ୟମାନେ ଯାଇ ତାଙ୍କ ଘର ଘେରାଉ କଲେ । ମୌର୍ଯ୍ୟ, ତାଙ୍କ ପତ୍ନୀ ଓ ପୁତ୍ର-ମାନଙ୍କୁ ଛୁରି ଦେଖାଇ ଗୋଟାଏ ଶିଳା ଘରେ ବନ୍ଦୀ କରାଗଲା ।





ସେ ଶିଳା ଘରର କାନ୍ଥମାନ ଅନେକ ଉଚ୍ଚ । ଦ୍ୱାର ବୋଲି ମାତ୍ର ଗୋଟିଏ । ସବୁଦିନେ ଜଣେ ପ୍ରହରୀ ସେମାନଙ୍କୁ ସାମାନ୍ୟ କିଛି ଆହାର ଓ ପାଣି ଯୋଗାଇ ଦିଏ । ସେଥିଦ୍ୱାରା ମାତ୍ର ଜଣେ କୌଣସି ମତେ ପ୍ରାଣ ଧରି ରହି ପାରିବ ।

ସେ କାରାକକ୍ଷରେ ସେ ବନ୍ଦୀ ପରିବାର ଏକ ବିଶେଷ ସିଦ୍ଧାନ୍ତ ନେଲେ । ସେ ସାମାନ୍ୟ ଖାଦ୍ୟ ପେୟ ସମସ୍ତେ ବାଣ୍ଟି ନେଲେ କାହାରି କିଛି ଲାଭ ହେବ ନାହିଁ । ବରଂ ଭବିଷ୍ୟତରେ ଏ ଅନ୍ୟାୟର ପ୍ରତିଶୋଧ ନେବା ନିମନ୍ତେ ଜଣେ ମାତ୍ର ଖାଇ ପିଇ ବଞ୍ଚିରହୁ । ଚନ୍ଦ୍ରଗୁପ୍ତହିଁ ସେଥିପାଇଁ ମନୋନୀତ ହେଲେ ।





ତେଣେ ନନ୍ଦ ଭାଇମାନଙ୍କ ଭିତରେ ଯିଏ ବଡ଼, ସିଏ ସିଂହାସନାରୂଢ଼ ହେଲେ । ଦିନ ଗଡ଼ି ଚାଲିଥାଏ । ଦିନେ ଲଙ୍କା ରାଜାଙ୍କର ଜଣେ ଦୂତ ଆସି ପହଞ୍ଚିଲେ । ସେ ତାଙ୍କ ରାଜାଙ୍କଠୁଁ ଏପରି ଏକ ଢଗ ନେଇ ଆସିଥାନ୍ତି, ଯାହାର ଅର୍ଥ କରିବା ଦରବାରର କୌଣସି ଅମାତ୍ୟ ପକ୍ଷରେ ସମ୍ଭବ ହେଲା ନାହିଁ ।

ଜଣେ ମନ୍ତ୍ରୀ ରାଜାଙ୍କୁ ଗୋପନରେ କହିଲେ, "ଚନ୍ଦ୍ରଗୁପ୍ତଙ୍କ କଥା ମନେ ଅଛି ? ଢଗଢମାଳିର ଅର୍ଥ କରିବାରେ ସେ ହେଲେ ଧୂରନ୍ଧର । ଦିନେ ଦୁଇଦିନ ପାଇଁ ତାଙ୍କୁ କାରାଗାରରୁ ବାହାରକୁ ଆଣିଲେ କ୍ଷତି କ'ଣ ?" ରାଜା ଏ ପ୍ରସ୍ତାବରେ ସମ୍ମତ ହେଲେ ।





କାରାକକ୍ଷ ଖୋଲିଗଲା । ଏକମାତ୍ର ଚନ୍ଦ୍ରଗୁପ୍ତହିଁ ସେତେବେଳକୁ ବଞ୍ଚିଥିଲେ। ବର୍ଷକ ପରେ ସେ ସୂର୍ଯ୍ୟାଲୋକ ଓ ମୁକ୍ତ ପବନ ଭିତରକୁ ଆସିଲେ । ତାଙ୍କୁ ନଅରକୁ ନିଆଗଲା । ସ୍ନାନାହାର ପରେ ସେ ପ୍ରକୃତିସ୍ଥ ହେବାରୁ ତାଙ୍କୁ ମୁକୁଳାଇ ଆଣିବାର କାରଣ ବୁଝାଗଲା ।

ପରଦିନ ସେ ନୂଆ ଲୁଗାପଟା ପିନ୍ଧି ଦରବାରକୁ ଆସିଲେ ଓ ଲଙ୍କାର ରାଜଦୂତ ଆଣିଥିବା ଢଗର ଅର୍ଥ ଅକ୍ଳେଶରେ କହିଦେଲେ । ଅମାତ୍ୟ-ମାନେ ସେତେବେଳକୁ ସେ ରାଜଦୂତ ଆଗରେ ଅପମାନ ବୋଧ କରୁଥିଲେ । ବର୍ତ୍ତମାନ ସେମାନେ ଆନନ୍ଦରେ ଚନ୍ଦ୍ର-ଗୁପ୍ତଙ୍କର ଜୟଧ୍ୱନି ଦେଲେ ।





ସେମାନେ ଚନ୍ଦ୍ରଗୁପ୍ତଙ୍କୁ ଶୋଭାଯାତ୍ରାରେ ନଗର ଭିତର ଦେଇ ତାଙ୍କ ଘରକୁ ନେଇଗଲେ । ସେ ଘର ସେତେ-ବେଳକୁ ପରିତ୍ୟକ୍ତ ହୋଇ ପଡ଼ିଥାଏ । ଚନ୍ଦ୍ରଗୁପ୍ତଙ୍କ ସହ ଅନ୍ୟମାନଙ୍କ ଆଖିରୁ ବି ଅଶ୍ରୁ ଆସିଗଲା । ଚନ୍ଦ୍ରଗୁପ୍ତ ହଠାତ୍ ଏପରି ଜନପ୍ରିୟ ହେବାର ଦେଖି ରାଜା ତାଙ୍କୁ ପୁଣି କାରାରୁଦ୍ଧ କରିବାକୁ ସାହସ କଲେ ନାହିଁ ।




# ପିଶାଚର ଦୁରାଶା

ଗଙ୍ଗାପୁର ଗାଁ ବାହାରେ ଗୋଟିଏ ମନ୍ଦିର ଥାଏ । ଗାଁ ଭିତରୁ ମନ୍ଦିରକୁ ଯିବାକୁ ହେଲେ ଗୋଟିଏ ଅପନ୍ତରା ଅଞ୍ଚଳ ପାର ହୋଇ ଯିବାକୁ ହେଉଥାଏ । ଲୋକେ ସବୁଦିନ ସକାଳେ ଓ ସନ୍ଧ୍ୟାବେଳେ ମନ୍ଦିରକୁ ଯାଇ ପୂଜା ପ୍ରାର୍ଥନା କରୁଥାନ୍ତି ।

ସେ ଅପନ୍ତରା ଭିତରେ, ଗୋଟାଏ ଗଛରେ ରହିଥାଏ ଏକ ପିଶାଚ । ସେ ଭାବୁଥାଏ, "ଲୋକେ ଏମିତି ଭାବରେ ସେ ଦେଉଳକୁ ଦୌଡ଼ୁଛନ୍ତି, ଦେଉଳରେ ଥିବା ଦିଅଁ କ'ଣ ସେମାନଙ୍କର କିଛି ଉପକାର କରୁଛନ୍ତି ? ଉପକାର କରୁଥିଲେ ସେମାନେ ଏତେ ଦୌଡ଼ନ୍ତେ କାହିଁକି ?"

ପିଶାଚ ଦେଖୁଥାଏ, ଜଣେ ଧନୀ ବଣିକ, ଜଣେ ଶିକ୍ଷକ ଓ ଗୋଟିଏ ଗରିବ ସ୍ତ୍ରୀ ଲୋକ ସବୁଦିନେ ମନ୍ଦିରକୁ ଯାଉଥାନ୍ତି । ଦିନେ ସନ୍ଧ୍ୟାବେଳେ ବଣିକଙ୍କୁ ଏକୁଟିଆ ଦେଖି ପିଶାଚ ଗଛ ଉପରୁ ଓହ୍ଲାଇ ଆସି ତାଙ୍କୁ କହିଲା, "ହଇହୋ ବାବୁ, ତମେ ଯେ ସବୁଦିନ ମନ୍ଦିରକୁ ଦୌଡ଼ୁଛ, ଦିଅଁ ତମର କିଛି ଭଲ କରୁଛନ୍ତି ? ମୋତେ ଯଦି କହନ୍ତ, ମୁଁ ହୁଏତ ତମର କିଛି ଉପକାର କରିପାରନ୍ତି !"

ପ୍ରଥମେ ବଣିକ ଡରିଗଲେ । ତା'ପରେ ସେ ନିଜକୁ ସମ୍ଭାଳି ନେଇ କହିଲେ, "ଆରେ ବାବୁ, ମୋର ତମେ ଆଉ କ'ଣ ଉପକାର କରିବ ? ମୋର ପଇସାପତ୍ରର ଅଭାବ ନାହିଁ କି ଅନ୍ୟ କିଛିରେ କମ୍‌ତି ନାହିଁ । ଖାଲି ରାତିରେ ନିଦ ହେଉ ନାହିଁ ।"

"ଠାକୁରଙ୍କୁ ପ୍ରାର୍ଥନା କରି କିଛି ଲାଭ ନାହିଁ ?" ପିଶାଚ ପଚାରିଲା ।

"ନା, ଏ ପର୍ଯ୍ୟନ୍ତ ଔଷଧ ପତ୍ର ଖାଇ କିଛି ଲାଭ ହୋଇନାହିଁ କି ଠାକୁରଙ୍କୁ ଜଣାଇ




କିଛି ଲାଭ ହୋଇନାହିଁ।" ବଣିକ ସ୍ୱୀକାର କଲେ।

"ଯଦି ଠାକୁରଙ୍କୁ ଜଣାଇ କିଛି ଲାଭ ହୋଇନାହିଁ, ତେବେ ସବୁଦିନେ ଏମିତି ଭାବରେ ମନ୍ଦିରକୁ ଦୌଡୁଛ କାହିଁକି? ତମର କ'ଣ ଅନ୍ୟ କିଛି କାମ ନାହିଁ?" ପିଶାଚ ବ୍ୟଙ୍ଗ କରି ପଚାରିଲା।

"ତମେ ଖୁବ୍ କାମିକା ପିଶାଚ ଭଳି ମନେ ହେଉଛି। ମୁଁ ମନ୍ଦିରକୁ ଯାଉଛି କାରଣ ସେଠାକୁ ଗଲେ ଦିଅଁଙ୍କ ସାନ୍ନିଧରେ ଶାନ୍ତି ମିଳେ। ତମେ ମୋତେ ଏତେ ଜେରା କରୁଛ ଯେ, ସେଥିରୁ କ'ଣ ଲାଭ ପାଇବ?" ବଣିକ ପ୍ରଶ୍ନ କଲେ।

"ବୋଧହୁଏ ତମର ସବୁବେଳେ ଚୋର ଡାକୁଙ୍କ ପ୍ରତି ଭୟ ଯୋଗୁଁ ମନରେ ଉତ୍କଣ୍ଠା ରହୁଛି। ଯାହାହେଉ, ତମର ଯେପରି ଭଲ ନିଦ ହେବ, ସେ ବ୍ୟବସ୍ଥା ମୁଁ କରିବି। ତମେ ମୋ ପାଇଁ ଗୋଟାଏ ଦେଉଳ କରିଦେବ? ପୂଜା ପାଇବାକୁ ମୋର ଭାରି ମନ।" ପିଶାଚ କହିଲା।

"ପିଶାଚ ପାଇଁ ଦେଉଳ? ଏପରି କଥା ତ ମୁଁ ଜୀବନରେ ଶୁଣି ନଥିଲି। ତମେ ତ ଭଲରେ ଗଛରେ ରହିଛ। ଦେଉଳରେ ରହି ଅଧିକା ଲାଭ କ'ଣ ପାଇବ?" ବଣିକ ପଚାରିଲେ।

ପିଶାଚଟି ରାଗିଗଲା ଓ କହିଲା, "ତମେ ମୋଟେ ସିଧା ଲୋକ ନୁହଁ ଦେଖୁଛି। ଆରେ ବାବୁ, ମୋର ଦେଉଳରେ ରହିବାକୁ ସଉକ୍ ହେଉଛି, ରହିବି। ତମକୁ ନିଦ ଦେବି। ତମେ ଦେଉଳ ବନାଇ ଦେବ। ରାଜି ଯଦି କୁହ!" ପିଶାଚ କହିଲା।

"ଦେଉଳଟିଏ ବନାଇ ଦେବାରେ ଆଉ ସମସ୍ୟା କ'ଣ! ଆଗେ ନିଦ ହେଉ!" ବଣିକ କହିଲେ।

ଏହାର କିଛି ସମୟ ପରେ ଶିକ୍ଷକଙ୍କୁ ଏକୁଟିଆ ଦେଖି ପିଶାଚ କହିଲା, "ଦିଅଁ ତମର କେତେ-ଦୂର କ'ଣ ଉପକାର କରୁଛନ୍ତି ମୁଁ ଜାଣେନା। କିନ୍ତୁ ତମେ ଯଦି ମୋତେ କହିବ, ତେବେ ମୁଁ ତମର କିଛି ନା କିଛି ଉପକାର କରି ପାରିବି।"

"ସତେ ?" ଶିକ୍ଷକ ଭୟ କଟାଇ କହିଲେ, "ମୋର ବାହାହେବା ବୟସର ଝିଅଟିଏ ଅଛି । ତାକୁ ବାହାଦେଲା ଭଳି ସମ୍ବଳ ଯୋଗାଡ଼ କରି ପାରୁନାହିଁ। ଏହାହିଁ ମୋର ସମସ୍ୟା ।"

"ତମ ସମସ୍ୟାର ସମାଧାନ କରିଦେବା । କିନ୍ତୁ ଏଠି ବଣିକ ମୋ ପାଇଁ ଦେଉଳ ତିଆରି କରିଦେବା ପରେ ତମେ ମୋର ମୂର୍ତ୍ତିଟିଏ ଥାପିବ, ଏ କଥା ଦିଅ ।" ପିଶାଚ କହିଲା ।

"ନିଶ୍ଚୟ ଥାପିବି । ଆଗେ ମୋ ସମସ୍ୟାର ସମାଧାନ କରିଦିଅ ।" ଶିକ୍ଷକ କହିଲେ ।

"ଆଜି ରାତିକ ଭିତରେ ହୋଇଯିବ ।" ପିଶାଚ ଜବାବ୍ ଦେଲା ।

ଏହା ପରେ ସ୍ତ୍ରୀ ଲୋକଟିକୁ ଦେଖି ପିଶାଚ କହିଲା, "ତମେ ଦିଅଁଙ୍କୁ ଯାହା ମାଗୁଛ ମାଗ । କିନ୍ତୁ ମୁଁ ଯଦି ତମର କିଛି ଉପକାର କରିପାରିବି, ତେବେ କୁହ ।"

"ମୋ ସ୍ୱାମୀ ମଦ ଖାଇ ପଇସା ପତ୍ର ଉଡ଼ାଇ ଦିଅନ୍ତି । ସେତିକି ମୋର ଦୁଃଖ ।" ସ୍ତ୍ରୀ ଲୋକଟି କହିଲା ।

"ସେ ଯେପରି ମଦ ଖାଇ ନ ପାରିବ, ମୁଁ ସେ ବ୍ୟବସ୍ଥା କରିବି । କିନ୍ତୁ ବଣିକ ଦେଉଳ ଗଢ଼ିଦେବା ପରେ ଓ ଶିକ୍ଷକଟି ମୋ ମୂର୍ତ୍ତି ଗଢିଦେବା ପରେ ତୁ ସବୁଦିନେ ସନ୍ଧ୍ୟାରେ ଦୀପ ଜଳାଇବୁ ?" ପିଶାଚ ପଚାରିଲା ।

"ହଁ, ହଁ, ତାହା ନ କରିବି କିଆଁ ?" ସ୍ତ୍ରୀ ଲୋକଟି କହିଲା ।




ପିଶାଚ ଖୁସି ହୋଇଗଲା ।

ପରଦିନ ସନ୍ଧ୍ୟାରେ ବଣିକ ଅପନ୍ତରା ଭିତର-ଦେଇ ଯିବା ବେଳକୁ ପିଶାଚ ତାଙ୍କ ଆଗକୁ ଝୁଲିପଡ଼ି ଆଗ୍ରହରେ ପଚାରିଲା, "କ'ଣ ହେଲା ? ଏଣିକି ତମ ମନରେ ଆଉ ଆଶଙ୍କା ଉତ୍କଣ୍ଠା ରହିବ ନାହିଁ । ଫଳରେ ନିଦ ହେବ !"

"ହାଇରେ ଦୁଷ୍ଟ ! ତୁ ମୋତେ ନିଦ ଦେବା ନିମନ୍ତେ ମୋ ପାଖରେ ଥିବା ଟଙ୍କା ଓ ସୁନା ରୁପାକୁ ଅଙ୍ଗାରରେ ପରିଣତ କରିଦେଲୁ ? ଆଜି ରାତି ଭିତରେ ଯଦି ସେସବୁକୁ ପୂର୍ବ ରୂପରେ ବଦଳାଇ ନ ଦେବୁ, ତେବେ ମୁଁ ଗୁଣିଆ ଡ଼ାକି ତୋତେ ଶାସ୍ତି ଦେବାର ବ୍ୟବସ୍ଥା କରିବି ।" ବଣିକ କହିଲେ ।

"ହେଲା ହେଲା, ବାବୁ । ମୁଁ ଆଜ ରାତରେ ମୋ ଯାଦୁ ପ୍ରତ୍ୟାହାର କରନେବ ।" ପିଶାଚ ଡରିଯାଇ କହିଲା ।

କିଛି ସମୟ ପରେ ଶିକ୍ଷକଙ୍କୁ ଦେଖି ପିଶାଚ ଯେମିତି ତାଙ୍କ ଆଗକୁ ଆସିଛି, ଶିକ୍ଷକ କହିଲେ, "ମୂଢ଼ ! ମୁଁ ଝିଅ ବିବାହ ଦାୟିତ୍ୱରୁ ନିସ୍ତାର ପାଇବି ବୋଲି ତୁ ମୋ ଝିଅକୁ ପୁଅ କରିଦେଲୁ ? ଲଜ୍ଜାରେ ମୋ ଝିଅ କୁଆଡେ ପଳାଇ ଯିବାକୁ ବସିଛି । ଆଜ ରାତିକ ଭିତରେ ପୁଣି ପୂର୍ବାବସ୍ଥା ଫେରି ନ ଆସିଲେ ଆଗାମୀ କାଲି ମୁଁ ଗୁଣିଆ ଡାକି ତୋତେ ଶିକ୍ଷା ଦେବି ।"

"ରାଗ ନାହିଁ ବାବୁ । ମୁଁ ତମ ଝିଅକୁ ପୁଣି ଝିଅ କରିଦେବ ।" ପିଶାଚ କହିଲା ।

ଆଉ ଟିକିଏ ପରେ ସ୍ତ୍ରୀ ଲୋକଟିକୁ ଦେଖି ପିଶାଚ ଯେମିତି ତା' ଆଗକୁ ଆସିଛି ସ୍ତ୍ରୀ ଲୋକଟି କହିଲା, "ହଇରେ ପିଶାଚ ! ତୁ ମୋ ସ୍ୱାମୀକୁ ମଦପିଆ ଛଡ଼ାଇବା ନିମନ୍ତେ ତା' ଚେତା ହରାଇନେଇ ପକାଇ ଦେଲୁ ? ମୁଁ ତୋତେ ଏଇଆ କରିବାକୁ କହିଥିଲି ? କାଲି ଗୁଣିଆ ଡାକୁଛି !"

"ମାଉସୀ ! ରାଗ ନାହିଁ । ତମ ସ୍ୱାମୀ ଭଲ ହୋଇ ଉଠି ବସିବେ ।" ପିଶାଚ ଏହା କହି ଗଛ ଉପରକୁ ଯାଇ ମୁହଁ ମାରି ବସି ରହିଲା । ରାତି ଅଧ ବେଳକୁ ଗୋଟାଏ ପୁରୁଣା ପିଶାଚ ତା' ପାଖକୁ ଆସି ତାକୁ କହିଲା, "ମୁଁ ତୋ ଅବସ୍ଥା ଦେଖୁଥିଲି । ତୁ ଗୋଟାଏ ମୂର୍ଖ । ମଣିଷମାନେ ମନ୍ଦିରକୁ ଯାଆନ୍ତି ଦେବଦେବୀଙ୍କ ପ୍ରତି ତାଙ୍କ ଭିତରେ ଭକ୍ତିଭାବ ଥାଏ ବୋଲି । କାମନା ବାସନା ପୂରଣ ହୋଇପାରେ ନ ହୋଇପାରେ । ତଥାପି ସେମାନେ ଯିବେ । ତୁ ପିଶାଚଟାଏ । ପିଶାଚ ପ୍ରତି କାହାର ଭକ୍ତିଭାବ ଆସିପାରେ ? ମନ୍ଦିରରେ ପୂଜା ପାଇବୁ, ତୋର ଏଡ଼େ ଦୁରାଶା ? ତୁ ବି ବିଅଁଙ୍କୁ ମନେ ମନେ ଡାକ । ତା'ହେଲେ ଅନ୍ତତଃ ପିଶାଚ ଅବସ୍ଥାରୁ ମୁକ୍ତି ପାଇବୁ ।"

ସାନ ପିଶାଚ ମୁଣ୍ଡ ଟିଙ୍ଗାରି ଚୁପ୍ ରହିଲା ।





# କୃଷ୍ଣାବତାର

ଶ୍ରୀକୃଷ୍ଣଙ୍କ କାର୍ଯ୍ୟକଳାପରେ ଗୋକୁଳର ଲୋକେ ଯେତିକି ପୁଲକିତ ହେଉଥାନ୍ତି, ତେଣେ ମଥୁରାର ରାଜା କଂସ ସେତିକି ବିସ୍ମିତ ଓ ଭୟଭୀତ ହେଉଥାଏ। କିଏ ଏହି ବାଳକ? ସେ ଏଭଳି ଆଶ୍ଚର୍ଯ୍ୟଜନକ କାର୍ଯ୍ୟ ସବୁ କିପରି କରି ପାରୁଛି? ତେବେ କ'ଣ ବାଳକଟି ସତରେ ବଳରେ, ବୁଦ୍ଧିରେ ତାକୁ ବଳିଯିବ? ସେ ଯେ ଜଗତରେ ନିଜକୁ ସବୁଠାରୁ ବଳି ପରାକ୍ରମୀ ବୋଲି ଜାହିର କରୁଥିଲା, ସେ ଗର୍ବ କ'ଣ ଗୋଟାଏ ସାମାନ୍ୟ ବାଳକ ଖର୍ବ କରିବ ଏବଂ ତାକୁ ସେ ଅବସ୍ଥା ସହ୍ୟ କରିବାକୁ ହେବ? ଏଭଳି ପରିସ୍ଥିତି କିପରି ସମ୍ଭବପର ହେଲା?

"ଆଚ୍ଛା, ସେ ପିଲାଟା ଗୋବର୍ଦ୍ଧନ ପାହାଡ଼କୁ ଟେକି ଧରିଥିବା କଥା କ'ଣ ସତ୍ୟ? ସେ ଦୃଶ୍ୟ କିଏ ଦେଖିଛି?" କଂସ ବାରମ୍ବାର ଏ ପ୍ରଶ୍ନ ପଚାରୁଥାଏ। ମଥୁରାର ଯେଉଁ ଜଣେ ଦୁଇଜଣ ଲୋକ ସେ ଦୃଶ୍ୟ ଦେଖିଥିଲେ, କଂସ ସେମାନଙ୍କୁ ବାରମ୍ବାର ଜେରା କରୁଥାଏ। ସେମାନେ ତାହା ସତ୍ୟ ବୋଲି କହିଲେ କଂସ ରାଗିଯାଇ କହୁଥାଏ, "ତମେ ମୂର୍ଖ ଗୁଡ଼ାକ। ତମକୁ କେହି ଯାଦୁ କରି ଦେଇଥିଲା। ସେଥିଯୋଗୁଁ ତମେମାନେ ଏଭଳି ଉଦ୍ଭଟ କଥା କହୁଛ।"

"ହୋଇପାରେ, ମହାରାଜ!" କଂସର କ୍ରୋଧରୁ ରକ୍ଷା ପାଇବା ପାଇଁ ସେମାନେ ନିଜର ମତିଭ୍ରମ ହୋଇଥାଇପାରେ ବୋଲି ସ୍ୱୀକାର କରୁଥିଲେ।

କଂସ ଅଟ୍ଟହାସ୍ୟ କରି ସେମାନଙ୍କୁ ବିଦାୟ ଦେଉଥିଲା। କିନ୍ତୁ ପରେ ପୁଣି ସେମାନଙ୍କୁ

## ୯. କଂସର ଦୁଶ୍ଚିନ୍ତା



ଉଚାଇ ସେହି ଏକା ପ୍ରଶ୍ନ କରୁଥିଲା । ସେମାନେ ପୁଣି ପ୍ରଥମେ ଗୋଟାଏ କଥା କହି ପରେ ପୁଣି ଭିନ୍ନ କଥା କହୁଥିଲେ ।

କଂସର ପ୍ରରୋଚନାରେ ଦିନେ ଅରିଷ୍ଟ ନାମକ ରାକ୍ଷସ ଯାଇ ଲୁଚି ଲୁଚି ସନ୍ଧ୍ୟାବେଳେ ଗୋକୁଳରେ ପହଞ୍ଚିଲା । ଯମୁନା ନଦୀରେ ସେତେବେଳେ ଗୋପୀମାନେ ସ୍ନାନ କରି ନିଶ୍ଚିନ୍ତ ଭାବରେ ଜନପଦ ଆଡ଼କୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ହଠାତ୍ ଅରିଷ୍ଟ ଗୋଟାଏ ଭୀଷଣାକୃତି ଷଣ୍ଢର ରୂପ ନେଇ ସେମାନଙ୍କ ଆଡ଼କୁ ମାଡିଗଲା । ସେମାନେ କ'ଣ କରିବେ ଭାବି ପାରିଲେ ନାହିଁ । ଆତଙ୍କିତ ହୋଇ କେତେଜଣ ଚିତ୍କାର କରି ଉଠିଲେ ।

ଅରିଷ୍ଟ ସେମାନଙ୍କର ସେ ଭୟ ଦେଖି ଆନନ୍ଦରେ କୁଦିବାକୁ ଲାଗିଲା । ଗୋପୀମାନେ ନା ଆଗକୁ ଯାଇ ପାରୁଥାନ୍ତି, ନା ପଛକୁ ଯାଇ ପାରୁଥାନ୍ତି । ସେମାନେ ପଛକୁ ଦୌଡିଲେ କାଳେ ଷଣ୍ଢ ସେମାନଙ୍କୁ ଅନୁଧାବନ କରିବ, ଏହି ଭୟ ଥାଏ ।

ଷଣ୍ଢ ସେଠି ନାଚ କୁଦ ଗୋଟାଏ ପ୍ରକାଣ୍ଡ ଗାତ କରିପକାଇଲା । ତା'ପରେ କିଛି ସମୟ ନୀରବରେ ସେମାନଙ୍କୁ ଅନାଇ ସେମାନଙ୍କ ଆଡ଼କୁ ତୀବ୍ର ଗତିରେ ମାଡିଯିବାକୁ ଉଦ୍ୟତ ହେଲା ।

ହଠାତ୍ ସେଠାରେ ପହଞ୍ଚିଗଲେ ଶ୍ରୀକୃଷ୍ଣ । ସେ ଗୋପୀମାନଙ୍କୁ ନିର୍ଭୟରେ ନିଶ୍ଚଳ ରହିବାକୁ ନିର୍ଦ୍ଦେଶ ଦେଇ ଷଣ୍ଢର ବାଟ ଓଗାଳି ଠିଆ ହେଲେ । ଷଣ୍ଢ ଯେମିତି ତାଙ୍କ ଆଡ଼କୁ ଝପଟି ଆସିଛି, ସେ ସେମିତି ତା' ଶିଙ୍ଗ ଦୁଇଟିକୁ ଧରିନେଲେ । ଷଣ୍ଢ ଯେତେ ଛଟପିଟି ହେଲେ ବି ତାଙ୍କ କବଳରୁ ମୁକୁଳି ପାରିଲା ନାହିଁ । ଶ୍ରୀକୃଷ୍ଣ ତାକୁ ଠେଲି ଠେଲି ଦୂରକୁ ନେଇଗଲେ ଓ ପ୍ରବଳ ବେଗରେ ଗୋଟିଏ ଖାଲ ଭିତରକୁ ଠେଲି ଦେଲେ । ତଳକୁ ପଡିବା ବେଳକୁ ସେ ଆଉ ଷଣ୍ଢ ହୋଇ ରହିଲା ନାହିଁ; ତା'ର ଅସଲ ରାକ୍ଷସ ରୂପ ଫେରି ପାଇଲା । ଭୀଷଣ ଚିତ୍କାର କରି ଖାଲ ଭିତରେ ପଡି ସେ ପଞ୍ଚତ୍ୱ ପ୍ରାପ୍ତ କଲା ।

ଗୋକୁଳରେ ଯାଇ ଖବର ପହଞ୍ଚିଲା । ନନ୍ଦ ଓ ଅନ୍ୟମାନେ ଆସି ତାକୁ ଦେଖିଲେ ଓ

ଚିନ୍ତିଲେ । "ଅରିଷ୍ଟ କାହିଁକି ହଠାତ୍ ଆମ ନାଗ୍ରିମାନଙ୍କ ଉପରେ ଷଣ୍ଢ ରୂପ ଧରି ଆକ୍ରମଣ କରିବାକୁ ଆସିଲା ? ତା'ର ଉଦ୍ଦେଶ୍ୟ କ'ଣ ହୋଇପାରେ ? ଏ ସବୁ ପ୍ରଶ୍ନ ଉପରେ ସେମାନେ ଯେତେ ଚର୍ଚ୍ଚା କଲେ ବି ଏହାର କୌଣସି ସନ୍ତୋଷଜନକ ସମାଧାନ ପାଇଲେ ନାହିଁ । କଂସ ଯେ ସେ ଦୁଷ୍ଟ ରାକ୍ଷସକୁ ପଠାଇଥାଇ ପାରେ—ତାହା ପୁଣି କୃଷ୍ଣଙ୍କୁ ମାରିବା ପାଇଁ, ଏକଥା ସେମାନଙ୍କ ମୁଣ୍ଡକୁ ବା କପରି ଆସନ୍ତା ? ଯାହାହେଉ, ଅରିଷ୍ଟ ମରିଥିବାରୁ ସେମାନେ ବହୁତ ଖୁସି ହେଲେ ।

ଏ ସମ୍ବାଦ ପାଇବା ପରେ କଂସର ଉତ୍କଣ୍ଠାର ସୀମା ରହିଲା ନାହିଁ । ସେ ତା'ର ବିଶ୍ୱାସୀ ଅମାତ୍ୟ ଓ ମନ୍ତ୍ରୀମାନଙ୍କର ଏକ ବୈଠକ ଡକାଇ କହିଲା, "ଶୁଣ, କେତେ କେତେ ରାଜା ମହାରାଜା ମୋ ଆଗରେ ବିରଡ଼ା ପରି ଭଳି ଥରନ୍ତି ! ଦେବଗଣ ମୋ ଆଗରେ ଛନଭଙ୍ଗ ହୁଅନ୍ତି । ଅଥଚ, ଅଜବ କଥା ହେଲା, ଗୋଟାଏ ସାମାନ୍ୟ ବାଳକ କ୍ରମେ ଭୀଷଣ ବଳୁଆ ହୋଇ ଉଠୁଛି—ସତେ ଅବା ଦିନେ ସେ ମୋର ମୁକାବିଲା କରିବ ! ନାରଦ ମୋତେ ଦିନେ ଇଙ୍ଗିତରେ କହିଥିଲେ, ମୋତେ ଯିଏ ବଧ କରିବା କଥା, ସିଏ ନଗରଦରେ ଅନ୍ୟତ୍ର ବଢୁଛି । ଏ ବାଳକ ସେହି ଶତ୍ରୁ ନୁହେଁ ତ ? କିଏ କହିବ ? ମୁଁ ଭାବୁଛି, ଯେଉଁ କନ୍ୟା ଦେବକୀ ଗର୍ଭରୁ ଜନ୍ମ ହେବାର ଖବର ମୋତେ ଦିଆଯାଇଥିଲା, ସେ କନ୍ୟା ଆଉ କେହି, ଦେବକୀ ଗର୍ଭଜାତ ନୁହେଁ । ଦେବକୀ ଗର୍ଭରୁ ନିଶ୍ଚୟ ପୁଅଟିଏ ଜନ୍ମିଥିଲା ଓ ତାକୁ ବସୁଦେବ ଯାଇ ଗୋକୁଳରେ ରଖିଦେଇ ଆସିଛି !"



"ଆଜ୍ଞା, ବସୁଦେବ ତ ଆପଣଙ୍କ ପ୍ରାସାଦ ଭିତରେ ଥିବା କାରାଗାରରେ ବନ୍ଦୀ, ସେ ଯାଇ ତାଙ୍କ ନବଜାତ ସନ୍ତାନକୁ ଆଉ କେଉଁଠି କପରି ଛାଡ଼ି ଆସିଥାନ୍ତେ ?" ଜଣେ ଅମାତ୍ୟ କଂସକୁ ଏ ପ୍ରଶ୍ନ କଲେ ।

କଂସ କହିଲା, "ତୁମର ପ୍ରଶ୍ନ ଯଥାର୍ଥ । କିନ୍ତୁ ସେପରି କିଛି ଘଟି ନଥିଲେ ଏ ଅଜବ ପିଲାଟା ସମ୍ଭବ ହେଲା କପରି ? ବର୍ତ୍ତମାନ ବସୁଦେବକୁ ଆଣି ଧମକ ଚମକ ଦେଲେ ସେ ହୁଏତ ସବୁ ମାନି ଯିବେ ।"




କଂସ ଗର୍ଜନ ଗର୍ଜନ କରି କହିଲା, "ତମେ ଭାବୁଛ, କିଛି ନ କହିଲେ ତମେ ନିର୍ଦ୍ଦୋଷ ବୋଲି ପ୍ରମାଣ ହୋଇଯିବ ? ନନ୍ଦ ପରିବାରରେ ରହି ନାନା ପ୍ରକାର ଅସମ୍ଭବ କାମ କରୁଥିବା ସେ ଟୋକା କିଏ ? ଜବାବ୍ ଦିଅ ।"

ବସୁଦେବ କିଛି କହିଲେ ନାହିଁ ।

କଂସ ପୁଣି କହିଲା, "ମୁଁ ଜାଣେ, ମୋତେ ମାରି ମୋ ରାଜ୍ୟ ମାଡି ବସିବା ତମର ସ୍ୱପ୍ନ । ମନେରଖ, ସେ ସ୍ୱପ୍ନ ସ୍ୱପ୍ନରେହିଁ ରହିଯିବ । ମୋ ଆଗରୁ ଇନ୍ଦ୍ର ବି ପଳାଇବାକୁ ବାଟ ପାଇବ ନାହିଁ । ତମେ କେତେକର ମଣିଷ ? ସେ ଗାଈଜଗା ଟୋକା ବା ମୋର କରିବ କ'ଣ ?"

କଂସର ନିର୍ଦ୍ଦେଶ କ୍ରମେ ତା' ଅନୁଚରମାନେ କାରାକକ୍ଷରୁ ବସୁଦେବଙ୍କୁ ନେଇ ଆସିଲେ । ତାଙ୍କୁ ଆସନ ଦେଇ କଂସ ହଠାତ୍ ଗର୍ଜନ କରି କହିଲା, "ବସୁଦେବ ! ତମେ ମୋର ଭଗ୍ନୀପତି ଭାବରେହିଁ ଯେତିକି ମର୍ଯ୍ୟାଦା ପାଉଛ । ଠିକ୍ କଥା ନା ନୁହେଁ ?"

ବସୁଦେବ ଆଉ କହିବେ କ'ଣ ? କଂସର ଭଗ୍ନୀପତି ହୋଇ ସେ କାରାଯନ୍ତ୍ରଣା ଭୋଗୁଛନ୍ତି; ଏକ ପରେ ଏକ ନିଜ ସନ୍ତାନମାନଙ୍କର ବିନାଶ ଦେଖୁଛନ୍ତି । କଂସ ଯଦି ଏତେ ମୂଢ଼ ଯେ ଏହାକୁ ମର୍ଯ୍ୟାଦା ବୋଲି କହିବ, ସେ ତା'ର ଉତ୍ତର କ'ଣ ଦେବେ ? ସେ ନୀରବରେ ତଳକୁ ଅନାଇ ବସି ରହିଲେ ।

ବସୁଦେବ ଏଥର କହିଲେ, "କଂସ ! ତମେ କାହିଁକି ଭାବୁଛ ଯେ ତମର ଅନିଷ୍ଟ କରିବାକୁ ସମସ୍ତେ ତତ୍ପର ? ତମ ନିଜ ପାପ ତମକୁ ଦଂଶନ କରୁଛି । ତମେ ଛଟପଟ ହେଉଛ । ଅନ୍ୟ କାହାକୁ ସେପାଇଁ ଦାୟୀ କଲେ କ'ଣ ହେବ ?"

"ଚୁପ୍ କର !" କଂସ ପାଟି କରି ବସୁଦେବଙ୍କୁ କାରାଗାରକୁ ପଠାଇଦେଲା । ତା'ପରେ ସେ ଅମାତ୍ୟମାନଙ୍କୁ କହିଲା, "ଧନୁ ଉତ୍ସବର ସମୟ ହୋଇ ଆସିଲାଣି । ଏବର୍ଷ ବିଶେଷ ଜାକଜମକରେ ଉତ୍ସବ କରିବା । ଆମର ବଡ଼ ବଡ଼ କୁସ୍ତିବିତ୍‌ମାନେ ସେମାନଙ୍କ ବିଦ୍ୟା ଦେଖାଇବେ । କୃଷ୍ଣ ତା' ଭାଇ ବଳରାମ

ପରା ଆଜି ଷଣ୍ଢ, କାଲି ବିରାଟ ସାପ—ଏମିତି କେତେ କ'ଣ ମାରି ପକାଇଛନ୍ତି ? ବେଶ୍ । ସେମାନେ ବି ଆସି ଏଠି ଆମ ଲୋକଙ୍କ ସହ ଲଢ଼ନ୍ତୁ । ମଜା ଦେଖିବା । ସେମାନଙ୍କୁ ବି ଖୁବ୍ ମଜା ଦେଖାଇବା । କ'ଣ କହୁଛ ସଭାସଦ୍‌ଗଣ ?"

"ଖୁବ୍ ଭଲ ହେବ । ଏଥର ଉତ୍ସବ ବିଶେଷ ଆଡ଼ମ୍ବରରେ ହେବାର ଆଦେଶ ଦିଅନ୍ତୁ ।" ଅମାତ୍ୟମାନେ କହିଲେ ।

କଂସ ସେହି ଅନୁସାରେ ଆଦେଶ ଘୋଷଣା କରିଦେଲା । ତା'ପରେ ଜଣେ ବିଶିଷ୍ଟ ବ୍ୟକ୍ତି ଅକ୍ରୂରଙ୍କୁ ଡାକି କହିଲା, "ତମେ ଗୋକୁଳ ଯାଅ । ନନ୍ଦକୁ କହିବ ଏଥର ଧନୁଯାତ୍ରା ପାଇଁ ଯେତେ ପାରିବ ଦୁଧ ଦହି ପଠାଇବ । ସଙ୍ଗେ ସଙ୍ଗେ ସେ ନିଜେ ବି ସପରିବାରେ ଆସିବାକୁ ମୋର ନିର୍ଦ୍ଦେଶ ଜଣାଇଦେବ । ବିଶେଷ କରି କୃଷ୍ଣ ବଳରାମ ନିଶ୍ଚେ ଆସିବେ—ଏହା ମୋର ଇଚ୍ଛା । ତମର ନନ୍ଦ ସହିତ ବିଶେଷ ବନ୍ଧୁଭାବ ଅଛି ବୋଲି ମୁଁ ଜାଣେ । ତେଣୁ ତମେ ଯାଅ ।"

ଏହାପରେ କଂସ ପୁଣି ବସୁଦେବଙ୍କୁ ଗାଳି ଗୁଲଜ କରିବାକୁ ଆରମ୍ଭ କରନ୍ତେ ଅନ୍ଧକ ନାମକ ଜଣେ ବୟୋବୃଦ୍ଧ ଅମାତ୍ୟ ତାଙ୍କୁ କହିଲେ, "କଂସ ! ତମେ ଏ ନିରପରାଧ ବ୍ୟକ୍ତିଙ୍କୁ କାହିଁକି ଭଲା ଏତେ କୁକଥା କହୁଛ ? ତମେ ଏଥିରୁ କ'ଣ ଲାଭ ପାଉଛ ? ସେ ଯେପରି ଅବସ୍ଥାରେ ଅଛନ୍ତି, ତାହା କ'ଣ ଯଥେଷ୍ଟ ଯନ୍ତ୍ରଣା ଦାୟକ ନୁହେଁ ? ତମେ ବୋଝ ଉପରେ





ଲଳିତାବଡ଼ା ଥୋଇବା ଭଳି ଗୁଡ଼ାଏ ବକ ତାଙ୍କୁ କଷ୍ଟ ଦେବ ?”

କଂସ ବୃଦ୍ଧଙ୍କଠୁଁ ଏକଥା ଶୁଣି କିଛି ଶିଖିବା ଦୂରର କଥା, ତାଙ୍କୁ ସେଠାରୁ ତଡ଼ିଦେଲା ଓ ନିଜେ ରାଗ ତମତମ ହୋଇ ଭିଆସ ଭିତରକୁ ପ୍ରସ୍ଥାନ କଲା ।

କିନ୍ତୁ ଅକ୍ରୂରଙ୍କୁ ପଠାଇ କୃଷ୍ଣ ବଳରାମଙ୍କୁ ମଥୁରାକୁ ଅଣାଇ ସେମାନଙ୍କ ନିଧନ ଚେଷ୍ଟା କରିବା ଯାଏ ତା’ର ଧୈର୍ଯ୍ୟ ରହୁଛି କାହିଁ ? ସେ କେଶୀ ନାମକ ରାକ୍ଷସକୁ ଅନେକ ପ୍ରକାର ନିର୍ଦ୍ଦେଶ ଦେଇ ଗୋକୁଳକୁ ପଠାଇଦେଲା । କେଶୀ ଗୋଟାଏ ଉନ୍ମତ୍ତ ଅଶ୍ୱ ବେଶରେ ଯାଇ ସେ ମୂଲକରେ ପହଞ୍ଚି ନାହିଁ ନଥିବା ଉତ୍ପାତ ଆରମ୍ଭ କଲା । ଗୋରୁଗାଈମାନଙ୍କ ଉପରକୁ ଲମ୍ଫ ଦେଇ ସେମାନଙ୍କୁ ଭୂତଳଶାୟୀ କରି ସେମାନଙ୍କୁ ଚିରି ପକାଇ ସେମାନଙ୍କ ରକ୍ତ ପିଇପିବାକୁ ଲାଗିଲା । ଗୋଟାଏ ଘୋଡ଼ା ଏମିତି କାଣ୍ଡ କରିବ, ଏକଥା କେହି କଳ୍ପନା କରି ନଥିଲେ । ଲୋକେ ବିବ୍ରତ ହେଲେ ।

ଶ୍ରୀକୃଷ୍ଣ ବୁଝିଲେ ଏ ଘୋଡ଼ାଟିର ଅସଲ ରୂପ କ’ଣ । ଦିନେ ଘୋଡ଼ା ଉନ୍ମତ୍ତ ଭାବରେ ଦୌଡ଼ି ଆସୁଥିବା ବେଳେ ସେ ତା’ ଆଗକୁ ଯାଇ ତାଳି ବଜାଇଲେ । ଘୋଡ଼ା ତାଙ୍କରି ଆଡ଼େ ମାଡ଼ି ଆସିଲା । ଶ୍ରୀକୃଷ୍ଣ ତା’ ବିସ୍ଫାରିତ ମୁହଁ ଭିତରେ ହାତ ଭର୍ତ୍ତି କରି ତା’ ଜିଭଟିକୁ ଧରି ପକାଇଲେ । ଏଡ଼େ ପ୍ରଚଣ୍ଡ ଘୋଡ଼ା ସେମିତି ଠିଆ ହୋଇ ରହିଲା । ବିଶେଷ କିଛି ନକରି ଶ୍ରୀକୃଷ୍ଣ ଅନ୍ୟ ହାତରେ ତାକୁ ଗୋଟାଏ ଗୁମ୍ଫୁଡ଼ା ମାରିଲେ ।

ସେ ଦିନେ ଗୋପନରେ ତା’ର ସବୁଠାରୁ ବିଶ୍ୱାସୀ ମନ୍ତ୍ରୀମାନଙ୍କୁ ଡକାଇ କହିଲା, “ଆଜି ତମମାନଙ୍କ ଆଗରେ ମୋର ପ୍ରକୃତ ଭୟ ପ୍ରକାଶ କରିବାକୁ ମୁଁ କୁଣ୍ଠିତ ନୁହେଁ । ଗୋକୁଳରେ ବଢୁଥିବା ସେ ଟୋକା କଥା ଯେତେ ଭାବୁଛି, ମୁଁ ସେତେ ବିଚଳିତ ଅନୁଭବ କରୁଛି । କିଏ ସେ ? ଦୈବବାଣୀ କ’ଣ ତା’ହେଲେ ସତ ହେବ ? ମୁଁ ଦେବକୀ ବସୁଦେବଙ୍କୁ କାରାରୁଦ୍ଧ କରି, ସେମାନଙ୍କ ନବଜାତ ଶିଶୁମାନଙ୍କୁ ହତ୍ୟା କରି ତେବେ କି ଲାଭ ପାଇଲି ?”

ମନ୍ତ୍ରୀମାନେ କହିଲେ, "ଆଜ୍ଞା, ଆପଣ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ । ସେ ପିଲା ଯିଏ ହେଉ ନା କାହିଁକି, ଧନୁ ଉତ୍ସବ ବେଳେ ତାକୁ ଶେଷ କରିଦେବା । ସେ ପିଲା ହୁଏତ କିଛି ଯାଦୁ ଜାଣେ ? ତାହାରି ବଳରେ ଅନ୍ୟମାନଙ୍କୁ ହଇରାଣ କରି ଦେଉଛି । କିନ୍ତୁ ଆପଣଙ୍କ ଆଗରେ କ'ଣ ତା'ର କୌଣସି ଯାଦୁ କାମ କରିବ ?"

"ଅବଶ୍ୟ ମୋ ଆଗରେ ଯାଦୁ କାମ କରିବ ନାହିଁ ।" କଂସ ସଗର୍ବ ହସ ହସି କହିଲା ।

"ତା' ହେଲେ ଆଉ ଚିନ୍ତା କ'ଣ ? ଆପଣ ନିଶ୍ଚିନ୍ତ ରହନ୍ତୁ । ଯଥା ସମୟରେ ଆପଣଙ୍କ ଚିନ୍ତାର ହେତୁ ଦୂର ହୋଇଯିବ ।" ମନ୍ତ୍ରୀମାନେ କହିଲେ ।

"ଅବଶ୍ୟ !" କଂସ ଏକମତ ହେଲା ।

ଘୋଡ଼ା ପ୍ରାଣ ହରାଇ ପଡଗଲା ବେଳକୁ କେଶୀ ରାକ୍ଷସରେ ପରିଣତ ହେଲା ।

"ଆରେ, ଆରେ, ଇଏତ ରାକ୍ଷସ କେଶୀ । ଇଏ ଏଠାକୁ ଆସି ଏପରି ଉତ୍ପାତ କରୁଥିଲା କି ଉଦ୍ଦେଶ୍ୟରେ ?" ବଡ଼ମାନେ ଏ ପ୍ରଶ୍ନ ପଚାରି ପରସ୍ପର ଆଡ଼େ ଅନାଇଲେ । କେଶୀର ଉପଦ୍ରବରୁ ସେମାନଙ୍କୁ ରକ୍ଷା କରିଥିବା ଯୋଗୁଁ ଶ୍ରୀକୃଷ୍ଣଙ୍କୁ ସେମାନେ ଫୁଲମାଳ ପିନ୍ଧାଇ ଅଭିନନ୍ଦିତ କଲେ ।

ଏହା ପରେ ପରେ ସେଠାରେ ଆସି ପହଞ୍ଚିଲେ ଅକ୍ରୂର ।

ଅକ୍ରୂରଙ୍କୁ ଦେଖି ଖାଲି ଯେ ନନ୍ଦ ଅତ୍ୟନ୍ତ ପ୍ରୀତ ହେଲେ, ତାହା ନୁହେଁ, ତାଙ୍କ ପରିବାରର ସମସ୍ତେ ଆନନ୍ଦରେ ତାଙ୍କୁ ସ୍ୱାଗତ କଲେ । ଅକ୍ରୂରଙ୍କ ପ୍ରତି ସମସ୍ତଙ୍କର ଥାଏ ପ୍ରଗାଢ଼ ଶ୍ରଦ୍ଧା ଓ ସମ୍ମାନ । ସେ ପୁଣି ବହୁଦିନ ଧରି ଗୋକୁଳକୁ ଆସିବାର ସୁଯୋଗ ପାଇ ନଥିଲେ ।

ଅକ୍ରୂର କାହିଁକି ଆସି ଗୋକୁଳରେ ପହଞ୍ଚିଥାନ୍ତି, ସେକଥା ଅବଶ୍ୟ କେହି ଜାଣି ନଥିଲେ ।





# କଚ୍ଛପର ଖୋଳ

ଚୀନ୍‌ର ଏକ ନଗରରେ ବେନ୍ ସି ନାମକ ବ୍ୟକ୍ତିଟିଏ ବାସ କରୁଥାଏ । ସେ ଥିଲା ଖୁବ୍ ବୁଦ୍ଧିମାନ ଓ ନାନା କଳା ବିଦ୍ୟାରେ ପାରଙ୍ଗମ । ସେ ସତରଞ୍ଜ ଖେଳ, ତନ୍ତୁବାଦ୍ୟ, ଚିତ୍ରକଳା, ନୃତ୍ୟ, ସଙ୍ଗୀତ ପ୍ରଭୃତି ବିଦ୍ୟା ଶିଖିଥାଏ । ତା'ର ଜାତକ ଦେଖି ଜଣେ ଜ୍ୟୋତିଷ ଭବିଷ୍ୟତ୍‌ବାଣୀ କରିଥାନ୍ତି ଯେ ଦିନେ ସେ ଅତି ବଡ଼ ଧନୀଲୋକ ହେବ । ତେଣୁ ବେନ୍ ସି ତା'ର ପୈତୃକ ସମ୍ପତ୍ତି ମଉଜ୍ ମଜଲିସ୍‌ରେ ଉଡ଼ାଉଥାଏ ।

ବସି ଖାଇଲେ ନଇବାଲି ସରେ । ବେନ ସି ର ସବୁ ସମ୍ପତ୍ତି କ୍ରମେ ଶେଷ ହୋଇ ଆସିଲା । ତା'ର ସମବୟସ୍କ ଯୁବକମାନେ ବ୍ୟବସାୟ ବାଣିଜ୍ୟ କରି ସେମାନଙ୍କର ଧନସମ୍ପତ୍ତି ବଢ଼ାଇବାରେ ଲାଗିଥା'ନ୍ତି । ଦିନେ ବେନ୍ ଭାବିଲା ସେ ମଧ୍ୟ କିଛି ବ୍ୟବସାୟ କରିବ । କିନ୍ତୁ କପାଳ ମନ୍ଦ; ସେ ଯାହା କିଛି ବ୍ୟବସାୟ କରେ, କ୍ଷତିହିଁ ହୋଇଥାଏ ।

ଥରେ ସେ ଶୁଣିଲା ଚାଳିଶଜଣ ବଣିକ ଜାହାଜଟିଏ ନେଇ ଦୂର ଦେଶକୁ ବାଣିଜ୍ୟ କରିବାକୁ ଯାଉଛନ୍ତି । ସେ ମଧ୍ୟ ସେମାନଙ୍କ ସହିତ ଯିବ ବୋଲି ସେମାନଙ୍କୁ ଅନୁରୋଧ କଲା । ଜଳଯାତ୍ରା ବେନ୍‌ର ମଜା ଗପ, କବିତା, ଯୋଗୁ ଭଲରେ କଟିବ ବୋଲି ସେମାନେ ତାକୁ ସଙ୍ଗରେ ନେଲେ । ବେନ୍‌ର ଇଚ୍ଛା ଥିଲା ନୂଆ ନୂଆ ଦେଶ ଦେଖିବ ଓ ନୂଆ ନୂଆ କଥା ଶିଖିବ । ବଣିକମାନଙ୍କ ନେତା ଚୁଙ୍ କିନ୍ତୁ ଭାବୁଥାଏ ବେନ୍ ସି ଦ୍ୱାରା କିଛି ବାଣିଜ୍ୟ ବ୍ୟବସାୟ ମଧ୍ୟ କରାଯାଇ ପାରିବ । କିଛି ଜିନିଷ ଖରିଦ୍ କରି ପୁଣି ଅନ୍ୟ ଦେଶରେ ବିକିଲେ କିଛିଟା ଲାଭ ହେବ । ଚୁଙ୍ କଥା ଶୁଣି ବଣିକମାନେ ପ୍ରତ୍ୟେକେ କିଛି



କିଛି ଗୁନା ଦୟାକରି ବେନ୍‌କୁ ଦେଲେ । ଗୁଙ୍ଗ କହିଲା, "ବେନ୍, ଏତିକ ମାତ୍ର ଟଙ୍କାରେ ତମେ କ'ଣ ବା ବ୍ୟବସାୟ କରିବ ? କିଛି ଫଳ କିଣିନିଅ ବାଟରେ ଖାଇବ ।" ଜାହାଜ ଛାଡ଼ିବା ପୂର୍ବରୁ ବନ୍ଦର ଅଞ୍ଚଳରେ ବଡ଼ ବଡ଼ କମଳା ଲେମ୍ବୁ ବିକ୍ରି ହେଉଥିଲା । ବେନ୍ କେତେ ଟୋକେଇ କମଳା କିଣି ପକାଇଲା ଓ ଜାହାଜରେ ନେଇ ଭରିଲା । ଅନ୍ୟ ବ୍ୟବସାୟୀମାନେ ଏସବୁ ଦେଖି ଖୁବ୍ ହସିଲେ ।

କିଛି ସମୟ ପରେ ଜାହାଜ ବିଦେଶ ଯାତ୍ରା ପାଇଁ ବନ୍ଦର ଛାଡ଼ିଲା । କିଛିଦିନ ସମୁଦ୍ର ଯାତ୍ରା କରିବା ପରେ ଜାହାଜ ଏକ ଦେଶରେ ଯାଇ ଲାଗିଲା । ବଣିକମାନେ ଜାହାଜରୁ ଓହ୍ଲାଇ ନିଜ ନିଜର ଜିନିଷପତ୍ର ଧରି ବଜାରକୁ ଗଲେ । ଆଗରୁ ସେମାନେ ଜାଣିଥା'ନ୍ତି କେଉଁଠି କ'ଣ ବିକ୍ରି ହେବ ଓ କ'ଣ କିଣାହେବ ଇତ୍ୟାଦି । ବିଚରା ବେନ୍ କ'ଣ କରିବ ? ହଠାତ୍ ତା'ର କମଳା ଟୋକେଇ କଥା ମନେ ପଡ଼ିଗଲା । ସେ ଭାବିଲା ହୁଏତ ଇତିମଧ୍ୟରେ ପଚି ଯିବଣି । ତେଣୁ ସେ ସବୁ ଟୋକେଇ ଗୁଡ଼ିକ ଜାହାଜ ଉପରକୁ ଆଣି ସଜାଇ ରଖିଲା ଓ ଗୋଟିଏ କମଳା ଖୋଲି କୋଳଟିମାନ ବସି ଖାଇଲା । ଏଣେ ସେହି ଦେଶର ଲୋକେ ଯେଉଁମାନେ ବନ୍ଦରରେ କାମ କରୁଥା'ନ୍ତି ବା ଯିବାଆସିବା କରୁଥା'ନ୍ତି ସେମାନେ କମଳା ଗୁଡ଼ିକର ସୁନ୍ଦର ରଙ୍ଗରେ ଆକୃଷ୍ଟ ହୋଇ ଆସିଲେ । ତା'ପରେ ଚାଖି ଦେଖିଲେ କମଳା ଗୁଡ଼ିକ ଖୁବ୍ ସ୍ୱାଦିଷ୍ଟ । ତେଣୁ ଅଳ୍ପ କିଛି ସମୟ ମଧ୍ୟରେ ସବୁ ବିକ୍ରି ହୋଇଗଲା । ବେନ୍ ବହୁତ ଟଙ୍କା ଲାଭ ପାଇଲା ।

ଏଣେ ଜାହାଜର ଧନୀ ବଣିକମାନେ ନିଜ ନିଜର ବ୍ୟବସାୟର କାର୍ଯ୍ୟ ଶେଷ କରି ଜାହାଜକୁ ଫେରି ଶୁଣିଲେ ବେନ୍ ସି କଥା । ସମସ୍ତେ ତ ଅବାକ୍ ହୋଇଗଲେ । ତା'ପରେ କେହି କେହି ମଧ୍ୟ ବେନ୍‌କୁ ନାନା ଭାବରେ ଅଭିବାଦନ କରି କହିଲେ, "ବେନ୍ ସି, ତୋର ଭାଗ୍ୟ ବଡ଼ ଟାଣ ଅଛି । ନହେଲେ କି ତୁ କମଳା ବିକି ଏତେ ଟଙ୍କା ଲାଭ କରିଥା'ନ୍ତୁ ? ଶୁଣ, ତୁ ବରଂ ଏଇ ଟଙ୍କାରୁ କିଛି ନେଇ



କ'ଣ ଖରିଦ୍ କରି ନେଇ ଆସିବୁ । ତାକୁ ନେଇ ଆମ ଦେଶରେ ବିକିଲେ ଆହୁରି ଲାଭ ପାଇବୁ ।" କିନ୍ତୁ ବେନ୍ କିଛି ଶୁଣିଲା ନାହିଁ । ସେ ଭାବିଲା ଯେତିକି ପାଇଛି ତାହା ଯଥେଷ୍ଟ ।

ସେହି ବନ୍ଦରରେ ଜାହାଜ ପ୍ରାୟ ପନ୍ଦରଦିନ ପର୍ଯ୍ୟନ୍ତ ରହିଲା । କେତେ ଲୋକ କେତେ କ'ଣ କିଣିଲେ । ତା'ପରେ ବାୟୁର ଗତି ଦେଖି ଜାହାଜ ସେଠାରୁ ନିଜ ଦେଶକୁ ଫେରିବା ପାଇଁ ଯାତ୍ରା କଲା । ଅଳ୍ପ କିଛିଦିନ ପରେ ହଠାତ୍ ସମୁଦ୍ରରେ ବହୁତ କୁହୁଡ଼ି ଦେଖାଗଲା । ଜାହାଜର କପ୍ତାନ ଦିଗନିର୍ଣ୍ଣୟ କରିପାରିଲା ନାହିଁ । ତେଣୁ ଶେଷରେ ଜାହାଜ ଗୋଟିଏ ନିର୍ଜନ ଦ୍ୱୀପ ପାଖରେ ନଙ୍ଗର ପକାଇଲା । କୁହୁଡ଼ି କଟିଗଲେ ପୁଣି ଯାତ୍ରା ଆରମ୍ଭ ହେବ ।

ସମସ୍ତେ ଜାହାଜରେ ଥା'ନ୍ତି, ବେନ୍ ବାହାରି ପଡ଼ିଲା ଦ୍ୱୀପ ବୁଲିବାକୁ । ସମସ୍ତେ ବିରକ୍ତ ହୋଇ କହିଲେ ଯେ ସେ ଛୋଟ ନିର୍ଜନ ଦ୍ୱୀପରେ ଦେଖିବାର ବା କ'ଣ ଅଛି ? ବେନ୍ କିଛି ନ ଶୁଣି ଏକେଲା ବୁଲିବାକୁ ଗଲା । ବୁଲି ବୁଲି ଏକ ଛୋଟ ପାହାଡ଼ ଉପରେ ଚଢ଼ି ଚାରିଆଡ଼କୁ ଅନାଇ ଦେଖିଲା । ଦ୍ୱୀପ ଚାରି-ପାଖରେ କେବଳ ପାଣିହିଁ ଦେଖିପାରୁଥିଲା । ଦେଖୁ ଦେଖୁ ଏକ ବିଚିତ୍ର ଜିନିଷ ଉପରେ ତା' ଆଖି ପଡ଼ିଲା । ପାଖକୁ ଯାଇ ଦେଖିଲା ତାହା ଏକ ବିରାଟ କଚ୍ଛପର ଖୋଳ । ଏହା ଆକାରରେ ଏକ ବିରାଟ ପଲଙ୍କ ପରି ହୋଇଛି । ବେନ୍ ଭାବିଲା, "ଆହା, ଏଡ଼େ ବଡ଼ କଚ୍ଛପ କି ପୃଥିବୀରେ ସମ୍ଭବ ? ଏକଥା ମୁଁ ଜାହାଜ ଯାତ୍ରୀମାନଙ୍କୁ କହିଲେ ସେମାନେ ହସି ଉଡ଼ାଇବେ ଓ ମୋତେ ଏକ ବଡ଼ ଉଦ୍ଭଟ ଲୋକ ବୋଲି କହିବେ । ବରଂ ଏଇଟା ମୁଁ ବୋହି ନେବି । ଦେଶକୁ ଗଲେ କାଟାକଟି କରି ଏଥିରୁ କିଛି ସୁନ୍ଦର ଜିନିଷ ତିଆରି କରି ପାରିବି ।" ଏକଥା ଭାବି ସେ ତା'ର ଅଣ୍ଟାରୁ ଡୋରି କାଢ଼ି ତାକୁ ବାନ୍ଧି ଘୋଷାରି ଘୋଷାରି ଜାହାଜ ପର୍ଯ୍ୟନ୍ତ ଆଣିଲା । ଜାହାଜର ଯାତ୍ରୀ-ମାନେ ଏହି କଚ୍ଛପ ଖୋଳଟିକୁ ଦେଖି ବିସ୍ମିତ ହେଲେ ନିଶ୍ଚୟ; ତେବେ ସମସ୍ତେ କହିଲେ,



"ଏହାର ଉପଯୋଗୀତା କିଛି ନାହିଁ, ଏତେ ବଡ଼ ଜିନିଷଟା ନେଇ ଲାଭ କ'ଣ?" କିଏ କହିଲା, "ଏସବୁ ଜିନିଷ ଔଷଧ ତିଆରି ହେବାରେ ଲାଗି ପାରିବ!" ବେନ୍ କହିଲା, "ଭାଇମାନେ, ଆପଣମାନେ କିଛି ନା କିଛି ବିଦେଶୀ ଜିନିଷ ନିଜ ସଙ୍ଗେ ଦେଶକୁ ନେଇ ଯାଉଛନ୍ତି । ମୁଁ ମଧ୍ୟ କିଛି ବିଦେଶୀ ଜିନିଷ ନେଇ ଯାଉଛି । ପାର୍ଥକ୍ୟ ଏତିକି ଯେ ଆପଣମାନେ ପଇସା ଦେଇ କିଣିଛନ୍ତି, ମୁଁ କିଛି ପଇସା ନଦେଇ ନିକେ ପାଇ ଯାଇଛି ।"

ପରଦିନ କୁହୁଡ଼ି ସମ୍ପୂର୍ଣ୍ଣ ରୂପେ କଟିଗଲା । ଜାହାଜ ପୁଣି ଯାତ୍ରା ଆରମ୍ଭ କଲା ଓ କିଛିଦିନ ପରେ ଯାଇ ଚୀନ୍‌ରେ ପହଞ୍ଚିଲା । ଜାହାଜ ପହଞ୍ଚିବା ମାତ୍ରେ ବ୍ୟବସାୟୀମାନଙ୍କ ଦଲାଲ୍‌ମାନେ ଆସି ବଣିକମାନଙ୍କୁ ସବୁ ନିଜ ନିଜର ମୁନିବମାନଙ୍କ ଘରକୁ ନିମନ୍ତ୍ରିତ କରୁଥା'ନ୍ତି । ଜଣେ ଇରାନୀ ଧନୀ ଲୋକଙ୍କ ଘରକୁ ବ୍ୟବସାୟୀମାନେ ନିମନ୍ତ୍ରିତ ହୋଇ ଗଲେ । ସେଠାରେ ବଡ଼ ଛୋଟ ବ୍ୟବସାୟ ଅନୁସାରେ ବ୍ୟବସାୟୀମାନଙ୍କୁ ଉଚ୍ଚ ଆସନ ଦିଆଯାଉଥିଲା । ସାଧାରଣମାନଙ୍କୁ ତଳେ ମସିଣା ଉପରେ ବସିବାକୁ ଦିଆ ହେଉଥିଲା । ବେନ୍‌କୁ ମଧ୍ୟ ମସିଣାରେ ବସିବାକୁ ପଡ଼ିଲା ।

ପରଦିନ ଇରାନୀ ବଣିକ ଜାହାଜକୁ ବୁଲି ଆସିଲେ ଜାହାଜରେ ଥିବା ବିଦେଶୀ ଜିନିଷ ଦେଖିବାକୁ । ଜାହାଜ ଉପରେ ପଡ଼ିଥିବା କଇଁଛର ବିରାଟ ଖୋଳ ଦେଖି ସେ ଆଶ୍ଚର୍ଯ୍ୟ ହୋଇ କହିଲେ, "ଏ ଅମୂଲ୍ୟ ଜିନିଷ କାହାର? କିଏ କ'ଣ ଏଇଠା ବିକ୍ରି କରି ପାରିବ?" ଅନ୍ୟ ବଣିକମାନେ କହିଲେ ଯେ ତାହା ବେନ୍ ସିର ।

ଏକଥା ଶୁଣି ଇରାନୀ ବଣିକ କ୍ରୋଧରେ ଗର୍ଜ୍ଜି ଉଠି କହିଲେ, "ଆପଣମାନେ କେତେଦିନ ହେବ ମୋତେ ଜାଣନ୍ତି । ଅଥଚ ଗତକାଲି ଏହି ଜିନିଷର ମାଲିକଙ୍କୁ ସାଧାରଣ ମସିଣାରେ ବସାଇ ଖାଇବାକୁ ଦିଆଗଲା? କେହି କିଛି ମୋତେ କହିଲେ ନାହିଁ? ତାଙ୍କୁ ଭଲ କରି ସତ୍କାର କରି ନପାରି ମୁଁ ଦୁଃଖିତ ଓ ଲଜ୍ଜିତ । ତାଙ୍କ ସହିତ ପ୍ରଥମେ କଥାବାର୍ତ୍ତା କରି ମୁଁ

ତାଙ୍କୁ ସେଥିପାଇଁ କ୍ଷମା ମାଗିବ ଓ ଏହି କଚ୍ଛପ ଖୋଳ ସମ୍ବନ୍ଧରେ ପଚାରିବ । ତା'ପରେ ଆପଣମାନଙ୍କ ଉନ୍ନତ କଥା ବୁଝାଦେବ ।"

ସେହି ଇରାନୀ ବଣିକର ନାମ ଥିଲା ଅବୁ ହୁସେନ୍ । ସେ ପ୍ରଥମେ ବେନ୍‌କୁ ତା' ଦୋକାନ ପାଖକୁ ନେଇଗଲେ ଓ କିଛି ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା କଲେ । ତା'ପରେ ଅନ୍ୟ ବଣିକମାନଙ୍କୁ ଡାକିଲେ । ସେ ବେନ୍‌କୁ ପଚାରିଲେ, "କ'ଣ, ଆପଣ ଏହି କଚ୍ଛପର ଖୋଳପାଟି ବିକ୍ରି କରିବେ ?"

ବେନ୍ କିଛି ବୋକା ଲୋକ ନଥିଲା । ସେ ଚତୁରତାର ସହିତ ଉତ୍ତର ଦେଲା, "ବିକ୍ରି କରିବ ନାହିଁ କାହିଁକି ? କିନ୍ତୁ ଭଲ ଦରଦାମ ହେଲେ ବିକିବ ।" ତା'ପରେ ବେନ୍ ଓ ଚଙ୍ଗ ମିଙ୍ଗ ଅବୁ ହୁସେନ ସହିତ କଥାବାର୍ତ୍ତା କଲେ । ଶେଷରେ ଚଙ୍ଗ ମଜା କରି ଅବୁ ହୁସେନ୍‌କୁ କହିଲା, "ବେନ୍‌ର ଉଦ୍ଦେଶ୍ୟ ଦଶହଜାର ଟଙ୍କା ହେଲେ ସେ ଦେଇଦେବ ।"

"ତା'ର ଅର୍ଥ ସେ ବୋଧହୁଏ ଏଇଟା ବିକ୍ରି କରିବାକୁ ଚାହୁଁ ନାହାନ୍ତି । ଥଟ୍ଟା କରୁଛନ୍ତି ।" ଅବୁ ହୁସେନ୍ କହିଲା ।

ଏବେ ବଣିକମାନେ ବୁଝିଲେ ଯେ ପ୍ରକୃତରେ ସେହି କଚ୍ଛପ ଖୋଳ ଏକ ଅମୂଲ୍ୟ ବସ୍ତୁ । ସବୁ ଘଟଣା ଚଙ୍ଗ ହୁସେନକୁ କହିଲା, ସେ କହିଲା, "ଆପଣ ଯାହା ମୂଲ୍ୟ ନିର୍ଦ୍ଧାରଣ କରନ୍ତୁ ।" ହୁସେନ ପଚିଶ ହଜାର ଟଙ୍କା ଦେଇ କଚ୍ଛପର ଖୋଳଟିକୁ କିଣି ନେଲା । ତାହା ମଧ୍ୟ ବହୁତ କମ୍ ଦାମ ଥିଲା । ବୁଝାଯାଏ ଯେ ଏପରି କଚ୍ଛପର ଖୋଳରେ ପ୍ରତ୍ୟେକ ଇଞ୍ଚ ଭିତରେ ଅନେକ ମୋତି ସବୁ ଭରି ରହିଥାଏ । ଯାହାହେଉ ବେନ୍‌ର ଦାରିଦ୍ର୍ୟ ଦୂର ହୋଇଗଲା । ଏବେ ସେ ଏକ ଧନୀ ବ୍ୟକ୍ତି ଭାବରେ ପରିଗଣିତ ହେଲା । ସହରରେ ତା'ର ସମ୍ମାନ ବଢ଼ିଗଲା । ପରେ ସେ ଏକ ସୁନ୍ଦରୀ ବାଳିକାକୁ ବିବାହ କରି ସୁଖରେ କାଳାତିପାତ କଲା ।






(ପୂର୍ବ ଅଙ୍କ ଥିବାରୁ ଅସମାପ୍ତ କାହାଣୀ)

ଏଇପର୍ଯ୍ୟନ୍ତ ଗଳ୍ପଟି କହି ସୌଦାମିନୀ ପିତାଙ୍କୁ କହିଲା, "ବାବା ଏ କ୍ଷେତ୍ରରେ କନକପ୍ରଭା କାହାକୁ ବିବାହ କରିବେ ? କୌଣ୍ଡିନ୍ୟ ଦେଶର ଯୁବରାଜଙ୍କୁ ନା ରାଜଶେଖରଙ୍କୁ ନା ଗନ୍ଧର୍ବଙ୍କୁ ? ଏହାହିଁ ଏହି ଗଳ୍ପର ସମସ୍ୟା । ମୋତେ ବିବାହ କରିବାକୁ ଆସୁଥିବା ଯୁବକମାନଙ୍କୁ ଆପଣ ଏହି ପ୍ରଶ୍ନହିଁ ପଚାରିବେ, ଯିଏ ଏ ଗଳ୍ପ ଶୁଣିବା ପରେ ନ୍ୟାୟସଙ୍ଗତ ଭାବରେ ସମାଧାନ କରିଦେବ ମୁଁ ତାକୁହିଁ ବିବାହ କରିବି ।

ଇତିମଧ୍ୟରେ ଅନେକ ଦିନ ବିତିଯାଇଥାଏ, ଅନେକ ରାଜପୁତ୍ର ଏ ସମସ୍ୟାର ସମାଧାନ କରିବାକୁ ଚେଷ୍ଟା କରି ବିଫଳ ହୋଇ ଫେରି ଯାଇଛନ୍ତି । ରାଜା ବଡ଼ ଚିନ୍ତିତ ଥା'ନ୍ତି । ସେ ଭାବୁଥା'ନ୍ତି, "ଯଦି ଏମିତି ହୋଇ ଚାଲିବ ତେବେ କ'ଣ ମୋ ଝିଅ ଆଜୀବନ କୁମାରୀ ହୋଇ ରହିଯିବ ?"

ଏଇ ସମୟରେ ରାଜାଙ୍କର ଅତି ପ୍ରିୟ ବନ୍ଧୁ ରାଜା ବିଚିତ୍ରସେନଙ୍କ ପୁତ୍ର ଚନ୍ଦ୍ରହାସ ନିଜ ରାଜ୍ୟର କୌଣସି କାର୍ଯ୍ୟ ବିଷୟରେ ପିତାଙ୍କର ପତ୍ର ନେଇ ଆସି ସେହି ରାଜ୍ୟରେ ପହଞ୍ଚିଲେ ।

ପତ୍ରରେ ଲେଖାଥିଲା—"ପ୍ରିୟ ବନ୍ଧୁ ଅନଙ୍ଗ, ତମେ ଜାଣ ଯେ ତିନିପିଢ଼ି ଧରି ମୋ ରାଜ୍ୟ ପଡ଼ୋଶୀ ରାଜ୍ୟ କହ୍ଲଣ ଦ୍ୱାରା ପରାଜିତ ହୋଇ, ତାହାର ଏକ ସାମନ୍ତରାଜ୍ୟ ରୂପେ ତିଷ୍ଠି ରହିଛି, କହ୍ଲଣର ବର୍ତ୍ତମାନ ରାଜା ବିକର୍ଣ୍ଣ ତା'ର ପୂର୍ବପୁରୁଷଙ୍କଠାରୁ ଅଧିକ କ୍ରୂର ଓ କୁତ୍ସିତ ସ୍ୱଭାବସମ୍ପନ୍ନ । ସେ ମୋତେ ରାଜଗାଦିରୁ ବିଚ୍ୟୁତ କରି ନିଜେ

ରାଜ୍ୟ ଦଖଲ କରିବାକୁ ବସିଛି । ମୁଁ ଏବେ ବୟସରେ ବୃଦ୍ଧ । ଯଥା ଶୀଘ୍ର ମୁଁ ଚନ୍ଦ୍ରହାସର ରାଜ୍ୟାଭିଷେକ କରିବାକୁ ଚାହେଁ । ବିକର୍ଣ୍ଣର ନୀଚସ୍ତରର ଷଡ଼ଯନ୍ତ୍ର ସବୁ ଦେଖି ଚନ୍ଦ୍ରହାସ ତା' ଉପରେ ଅତ୍ୟନ୍ତ ରୁଷ୍ଟ ହୋଇଅଛି । ସେନା ସଂଗଠନ କରି ସେ ଯୁଦ୍ଧରେ ବିକର୍ଣ୍ଣ ସହିତ ମୁକାବିଲା କରିବାକୁ ପ୍ରସ୍ତୁତ । ସେଥିପାଇଁ ସେ ଅନେକ ପାହାଡ଼ୀ ଜାତିର ଯୁବକମାନଙ୍କୁ ସୈନ୍ୟ ବିଭାଗରେ ନେଇ ଶିକ୍ଷା ଦେଉଛି । ଏ ପରିସ୍ଥିତିରେ ଯଦି ତମେ କିଛି ସୈନ୍ୟ ଓ କିଛି ଆର୍ଥିକ ସାହାଯ୍ୟ ଦେଇ-ପାରନ୍ତ ତେବେ ସେ ଅଧିକ ଉତ୍ସାହୀ ହୋଇ କାର୍ଯ୍ୟ କରନ୍ତା ଓ ବିଜୟ ହାସଲ କରିବା ପାଇଁ ତାକୁ ସହଜ ହୁଅନ୍ତା ।"

ଅନଙ୍ଗବର୍ମା ପତ୍ର ପଢ଼ି ବହୁତ ଖୁସି ହେଲେ । ସେ ଚନ୍ଦ୍ରହାସକୁ କହିଲେ, "ପୁଅ, ସୈନିକ ଓ ଆର୍ଥିକ ସହାୟତା ମୁଁ ତୁମକୁ ଅବଶ୍ୟ ଦେବି । ତେବେ ମୁଁ ଏକ ମାନସିକ କଷ୍ଟ ଭିତରେ ଗତି କରୁଛି । ସେ ସମସ୍ୟାଟି ସମାଧାନ ହୋଇଗଲେ ମୁଁ ତୁମକୁ ଅଧିକ ଉତ୍ସାହର ସହିତ ସାହାଯ୍ୟ କରିପାରିବି ।"

"ଆପଣ ଦୟାକରି ମୋତେ ଆପଣଙ୍କ ସମସ୍ୟା କହିବେ କି ? ଯଦି ମୁଁ କିଛି କରିପାରେ ।" ଚନ୍ଦ୍ରହାସ କହିଲେ ।

ଅନଙ୍ଗବର୍ମା ଅଳ୍ପ ସଙ୍କୋଚ କରି ନିଜର କନ୍ୟାର ବିବାହ ସର୍ତ୍ତ ବିଷୟରେ ସବୁକଥା କହିଲେ । ସେ କହିଲେ, "ଏ ପର୍ଯ୍ୟନ୍ତ ଯେତେ ଯେତେ ରାଜପୁତ୍ର ଆସିଛନ୍ତି ସେମାନେ ହୁଏତ



ନଜର କହିଛନ୍ତି, "ମୁଁ ତୁମକୁ ଏକ ମୂଲ୍ୟବାନ ରତ୍ନ ଉପହାର ସ୍ୱରୂପ ଦେବ ।" ଏପରି କହିବା ଦ୍ୱାରା ସେ ସମସ୍ତ ନେଇ ଦେଖିବେ ଝିଅର ଇଚ୍ଛା ଅଛି ନା ନାହିଁ । ଅଥଚ ରାଜଶେଖରର ବୀରତ୍ୱ, ନମ୍ରତା, ବୁଦ୍ଧିମତ୍ତା, ସୌନ୍ଦର୍ଯ୍ୟ, ଉଚ୍ଚକୁଳ ସବୁ ଜାଣି ମନେ ମନେ ସେ ନିଜର ଝିଅ ପାଇଁ ତାକୁ ବାଛିଛନ୍ତି । ତେଣୁ ଏ କ୍ଷେତ୍ରରେ କନକପ୍ରଭାଙ୍କର ରାଜଶେଖରଙ୍କ ସହ ବିବାହ ସର୍ବଥା ଉଚିତ ଓ ନ୍ୟାୟସଙ୍ଗତ ।"

ଚନ୍ଦ୍ରହାସଙ୍କ ସମାଧାନ ଶୁଣି ଅନଙ୍ଗବର୍ମା ଆଶ୍ଚର୍ଯ୍ୟ ଓ ଆନନ୍ଦ ହୋଇ ଏ ଖବର ସୌଦାମିନୀ ପାଖକୁ ପଠାଇଲେ ।

କିଛି ସମୟ ପରେ ସୌଦାମିନୀର ଜଣେ ସଖୀ ତାର ଏକ ପାଳିତ ଶୁକପକ୍ଷୀ ସହ ଆସି ପହଞ୍ଚିଲା । ସେ ଚନ୍ଦ୍ରହାସଙ୍କୁ କହିଲା, "ରାଜକୁମାରୀ ଆପଣଙ୍କ ସମାଧାନକୁ ସ୍ୱୀକାର କରିଛନ୍ତି । ସେ ଆପଣଙ୍କୁ ଶ୍ରଦ୍ଧା ଓ ସମ୍ମାନ ଜଣାଇଛନ୍ତି । ଆପଣ ଗଳ୍ପଟିରେ କନକପ୍ରଭାଙ୍କର ବର ନିର୍ବାଚନ ପାଇଁ ଯେଉଁ ସମାଧାନ କରିଛନ୍ତି ତାହା ଆପଣଙ୍କ ବିବେକକୁଶଳତାର ପରିଚାୟକ । ତେଣୁ ତାଙ୍କର ପ୍ରିୟ ଶୁକପକ୍ଷୀ ଦ୍ୱାରା ସେ ଆପଣଙ୍କ ନିକଟକୁ ତାଙ୍କର ବିବାହ ସ୍ୱୀକୃତିର ଚିହ୍ନ ସ୍ୱରୂପ ଏହି ପୁଷ୍ପମାଳ ପଠାଇଛନ୍ତି ଗ୍ରହଣ କରନ୍ତୁ ।"

ସଖୀର ଆଦେଶ ପାଇ ଶୁକପକ୍ଷୀ ସେହି ଫୁଲହାରଟି ଚନ୍ଦ୍ରହାସର କଣ୍ଠରେ ଲମ୍ବାଇ ଦେଲା । ତା'ପରେ ଚନ୍ଦ୍ରହାସ ଓ ସୌଦାମିନୀଙ୍କର ବିବାହ ଅତି ଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା ।

କିଛିଦିନ ପରେ ଚନ୍ଦ୍ରହାସ ନିଜ ଶଶୁରଙ୍କର ସୈନ୍ୟ ଓ ନିଜ ସୈନ୍ୟ ଏକାଠି କରି ବିକର୍ଣ୍ଣ ସହିତ ଯୁଦ୍ଧ କରି ତାକୁ ହରାଇଲେ । ଚନ୍ଦନ, ଜୟନ୍ତ ଓ କହ୍ଲଣ ତିନି ରାଜ୍ୟର ରାଜା ହୋଇ ଚନ୍ଦ୍ରହାସ, ସୌଦାମିନୀଙ୍କ ସହ ଆନନ୍ଦରେ କାଳାତିପାତ କଲେ ।





# ପତ୍ନୀର ଯୋଗ୍ୟ ପତି

ଗୋଟିଏ ଗ୍ରାମରେ ଦାମୋଦର ଓ ରମାବାଈ ନାମକ ଏକ ଦମ୍ପତି ଥା'ନ୍ତି । ଦାମୋଦର କୃଷିକାର୍ଯ୍ୟ କରେ । ରମାବାଈର କିନ୍ତୁ ସଉକ୍ ଥାଏ କୁକୁଡ଼ା ପାଳନ । ସେଥିରୁ ତା'ର ପଇସା ମଧ୍ୟ କିଛି ଲାଭ ହୁଏ । ଗ୍ରାମର ଅନ୍ୟାନ୍ୟ ଭଦ୍ରଲୋକ ମଧ୍ୟ ରମାବାଈ ପାଖରେ କୁକୁଡ଼ା କିଣି ଛାଡ଼ନ୍ତି । ବର୍ଷକ ପରେ ବେଶି ସଂଖ୍ୟା ହୋଇଗଲେ ଦି'ଟା କୁକୁଡ଼ା ଛାଡ଼ି ଆଉ ସବୁ ନେଇଯା'ନ୍ତି ।

ଦାମୋଦର କୁକୁଡ଼ା ମାଂସ ଖାଇବା ପାଇଁ ଖୁବ୍ ଖୁସିପାଏ । ଲୋଭରେ ପଡ଼ି ଥରେ ଦୁଥର ଦାମୋଦର ରମାବାଈକୁ କହିଲା ମାଂସ ରାନ୍ଧି ଖୁଆଇବାକୁ । ରମାବାଈ ସ୍ପଷ୍ଟ ନାହିଁ କରିଦେଲା । କେତେ ସଉକରେ କୁକୁଡ଼ା ଗୁଡ଼ିକୁ ରଖିଛି ଆଉ କହିବା ମାତ୍ରେ ମାରି କରି ଦେଇଦେବ ? ବିଚରା ଦାମୋଦର ପେଟରେ ଭୋକ ଓ ମନରେ ଲୋଭ ନେଇ ଛଟପଟ ହେଲା । ମନେ ମନେ ଚିନ୍ତା କରି ଗୋଟାଏ ଉପାୟ ପାଞ୍ଚିଲା । ଦୁଇ ଚାରିଦିନ ପରେ ସେ ରମାବାଈକୁ ଅତି ସ୍ନେହରେ ଡ଼ାକି କହିଲା, "ଦେଖ ତମେ ତ କୁକୁଡ଼ାଗୁଡ଼ିକୁ ଅତି ଯତ୍ନରେ ରଖିଛ । ମୋତେ ସୁଦ୍ଧା ଗୋଟିଏ ଦେଉ ନାହିଁ । ଏକବାର ତ ପ୍ରଶ୍ନ ଉଠୁନାହିଁ । ତେଣୁ ଆମ ଜମିଜମା ଛଡ଼ା ଆମର ଚଳିବାର ଆଉ କିଛି ଉପାୟ ନାହିଁ । ଏ ବର୍ଷ ଜମିରେ ଧାନ ମୁଗ କିଛି ଭଲ ଫସଲ ଧରୁନାହିଁ । ମୁଁ ଯାଇ ଜଣେ ବାବାଜୀଙ୍କୁ କହିଲି ଯେ ସେ କହିଲେ କୌଣସି କାରଣରୁ ଫସଲ ଦେବତା ଆମ ଉପରେ ରୁଷ୍ଟ ହୋଇଛନ୍ତି ଯଦି ତାଙ୍କୁ ଖୁସି କରାଯାଏ ତେବେ ସେ ଆମକୁ ଫସଲ ଦେବେ ।"

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

"ଆଚ୍ଛା, ତେବେ ତାଙ୍କୁ କପରି ଖୁସି କରାଯିବ ସେକଥା କୁହ ମୁଁ ଏବେ କରିବ ।" ରମାବାଈ କହିଲା ।

ଦାମୋଦର ଟିକିଏ ରହିଯାଇ କହିଲା, "ଦେଖ ରମା ବାବାଜୀ କହିଛନ୍ତି ଆମ କ୍ଷେତ ପାଖରେ ଥିବା ଓସ୍ତଗଛରେ ଗୋଟାଏ କୋରଡ଼ ଅଛି । ସେଠାରେ କୃଷି ଦେବତା ବାସ କରନ୍ତି । ତମେ ପ୍ରତିଦିନ ଭାତ ମାଂସ ରାନ୍ଧି ନେଇ ସେଇ କୋରଡ଼ରେ ରଖିଦେଇ ଆସିବ । ପଛକୁ ବୁଲି ଚାହିଁବ ନାହିଁ । କୃଷି ଦେବତା ନିଜେ ସେସବୁ ଖାଇଦେବେ । ରମାବାଈ ସେଇଆ କଲା । ତାକୁ କୁହାହୋଇଥାଏ ମାସେ ପର୍ଯ୍ୟନ୍ତ କରିବାକୁ । ରମାବାଈ ରାନ୍ଧି ରଖିଦେଇ ଆସେ ଆଉ ଦାମୋଦର ମହା ଆନନ୍ଦରେ ସେଗୁଡିକ ଖାଏ । ରମା ଦେଖିଲା ଏତେ ପୂଜା ସତ୍ତ୍ୱେ ମଧ୍ୟ ଫଳ କିଛି ହେଉ ନାହିଁ । ଜମି, କ୍ଷେତ ସେମିତି ପଡ଼ି ରହିଛି । ଠିକ୍ ଶେଷଦିନ ସେ ଖାଇବା ରାନ୍ଧି ରଖିଦେଇ ଆସି ଆଉ ଏକ ଗଛ ଆଢୁଆଳରେ ଛପି ରହି ଦେଖିଲା ଦାମୋଦର ଏପାଖ ସେପାଖ ଟିକିଏ ଚୋରଙ୍କ ପରି ଅନାଇ ଦେଇ ଖାଦ୍ୟ ନେଇ ମହା ଆନନ୍ଦରେ ଖାଉଛି । ଏସବୁ ଦେଖି ରମାବାଈ ରାଗରେ ପାଚ ଲାଲ୍ ହୋଇଗଲା । ଖଣ୍ଡେ ବାଡ଼ି ଧରି ଚିତ୍କାର କରି ଆସି ପହଞ୍ଚିଲା ଓ ଦାମୋଦରର କିଛି କଥା ଶୁଣିବା ପୂର୍ବରୁ ପିଠି ଦେଇଗଲା । ସେ କହିଲା ଏପରି ଅବସ୍ଥାରେ ଏପରି ବ୍ୟକ୍ତି ସହିତ ଘର କରି ରହିବା କଷ୍ଟକର ।



ତା'ପରେ ସେ ତା' ବାପଘରକୁ ଚାଲିଯିବାକୁ ସ୍ଥିର କଲା । ପେଡ଼ିପେଟରା ବନ୍ଧାବନ୍ଧି କରି ପଡ଼ୋଶୀ ଘରମାନଙ୍କୁ ଗଲା ବିଦାୟ ନେବାପାଇଁ । ତା'ପରେ ସେ ସେମାନଙ୍କୁ ନିଜ ସ୍ୱାମୀର କାରସାଦି କଥା ଖୋଲି କହିଲା ।

ଇତିମଧ୍ୟରେ ଦାମୋଦର ରମାବାଈର ଗଣ୍ଠିଲି ସବୁ ପେଟରାରୁ ବାହାର କରିଦେଇ ନିଜେ ତା' ଭିତରେ ପଶି ରହିଲା । ଯିବା ସମୟ ହୋଇଗଲା ମୂଲିଆମାନେ ପେଟରା, ବାକ୍ସ ଓ ଅନ୍ୟାନ୍ୟ ଜିନିଷ ସବୁ କାନ୍ଧେଇ ଆଗରେ ଚାଲିଲେ । ପଡ଼ୋଶୀ ମହିଳାମାନେ ରମାବାଈକୁ ବିଦାୟ ଦେଲେ । ତା'ପରେ ରମାବାଈ ବାପଘରକୁ ଗଲା ।

ବାପଘରେ ପହଞ୍ଚି ରମା ମା'ଙ୍କୁ ସବୁକଥା କହି କାନ୍ଦିଲା । ରମାର ମା' ତାକୁ ସାନ୍ତ୍ୱନା ଦେଇ ଦେଇ କହିଲେ, "ଝିଅ କାନ୍ଦନା, ତୁ ଏଇଠି ରହ, ସେ ବଦମାସର ମୁହଁ ସୁଦ୍ଧା ଚାହିଁବା ଦରକାର ନାହିଁ ।"

ତା'ପରେ ରମାର ମା' କୌତୁହଳବଶତଃ ପେଡିର ଢ଼ାଙ୍କୁଣୀ ଖୋଲିବା ମାତ୍ରେ ଦାମୋଦର ସେଥିରୁ ବାହାରି ପଡି କହିଲା, "ମା', ମୁଁ ଏହା ଭିତରେ ଥିଲି—ଆପଣଙ୍କ ହତଭାଗ୍ୟ ଜାମାତା—ଆପଣଙ୍କ ଚରଣ ଦର୍ଶନ ପାଇଁ ଏହା ଭିତରେ ଲୁଚି କରି ଆସିଛି । ଆଉ ସବୁ କଥା ତ ଝିଅଠାରୁ ଶୁଣିଥିବେ ।"

ଏସବୁ ଦେଖି ରମାର ମା' ଭୀଷଣ ରାଗିଗଲେ । ସେ ଭାବିଲେ, "ଏ ଦୁହେଁ ଇଚ୍ଛା କରି ଏପରି କରିଛନ୍ତି ମୋ ଘରେ ଆସି ରହିବା ପାଇଁ । ମୁଁ ମୋଟେ ଏମାନଙ୍କୁ ପ୍ରଶ୍ରୟ ଦେବି ନାହିଁ ।" ସେ ସେମାନଙ୍କୁ ସାବଧାନ କରାଇ କହିଲେ, "ଓ ଏଇ କଥା ? ମୁଁ ସବୁ ବୁଝି ପାରିଛି । ଏଠାରୁ ତୁରନ୍ତ ଚାଲିଯାଅ ଆଉ ମନେରଖ ଜୀବନରେ ମୋ ଦ୍ୱାର ମାଡ଼ିବ ନାହିଁ ।"

ରମାବାଈ ବିଚରା କିଂକର୍ତ୍ତବ୍ୟବିମୂଢ଼ ହୋଇ ସ୍ୱାମୀ ସହିତ ପୁଣି ନିଜ ଘରକୁ ଫେରିଗଲା ।





## ଜଳ ପ୍ରପାତ

ବ୍ରାଜିଲ୍ ଓ ଆର୍ଜେଣ୍ଟିନାର ସୀମା ଉପରେ ଥିବା ଇଗୁଆଜୁ ଜଳପ୍ରପାତରେ ବର୍ଷା ଋତୁରେ, ୮୦ ଦିନ ଧରି ପ୍ରତି ସେକେଣ୍ଡକୁ ୧,୬୨୫୦୦ ଘନଫୁଟ ଜଳ ପଡୁଥାଏ । ଏହି ଜଳପ୍ରପାତର ନିମ୍ନରେ ଥିବା ନଦୀ ଏବେ ସୁଦ୍ଧା ଫୁଲିଥିବା ଫୁଲିପାରି ଜଳ-ପ୍ରପାତର ଉପର ସ୍ତର ପର୍ଯ୍ୟନ୍ତ ଉଠି ଆସିଛି । (୨୫୦ ଫୁଟ)

## ଜଳସ୍ଥିତ ମଣ୍ଡୁକ



ଦକ୍ଷିଣ ଆଫ୍ରିକାରେ ଥିବା ଏକ ପ୍ରକାର ମଣ୍ଡୁକ ସାରା ଜୀବନ ପାଣି ଭିତରେ ହିଁ ଥାଏ । ତା'ର ପଛ ଗୋଡରେ ବଡ ବଡ ନଖ ଅଛି । ସେହି ନଖ ସାହାଯ୍ୟରେ ସେ ଆହାର ଧରି ଖାଏ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମେ '୮୮ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ବଞ୍ଚିବା ପାଇଁ ମୁଁ ଦୁନିଆ ଦୁଆରେ ଧରିଛି ଭିକ୍ଷାର ଥାଳ !

ଦ୍ୱିତୀୟ ଚିତ୍ର : ଅନ୍ନ ବସ୍ତ୍ରପାଇଁ ଜୀବନ-ନାଟିକା କାଳ ସାଥେ କରେ ଖେଳ !!

ପୁରସ୍କାର ବିଜେତା : ମଧୁସୂଦନ ଗଉଡ଼, ତୁଳାଗାଁ (କଳାହାଣ୍ଡି)

ବିଜେତାଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନସ୍, ଚନ୍ଦାମାମା ବିଲ୍ଡିଙ୍ଗସ, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandama-

Pick a PINKY...

and let your writing sparkle...

LION

# PINKY

*the Prettiest Pencil in town.*

Now from Lion Pencils, here's another Novelty...
the Pearl finished **LION PINKY** pencil, a pretty pencil to behold.
Superb in looks, super smooth in writing with its HB Lead
strongly bonded to give you unbreakable points.

***Also available with rubber tip and hexagonal***

***Other popular brands of Lion Pencils are:***

Lion **MOTO**, Lion **TURBO**, Lion **SWEETY**, Lion **CONCORD**,
Lion Hi-Tech **METALLIC**, Lion **MASH HOOR**, Lion **EXECUTIVE**,
Lion **NOVELTY**, Lion **GEEMATIC** Drawing Pencils
and **RATTAN** Colour Pencils & Wax Crayons.



LION PENCILS PVT. LTD. 95 Parijat, Marine Drive, Bombay 400 002.

National-407